# ଶ୍ରୀ ଜଗନ୍ନାଥ ପଦ୍ୟାବଳୀ




ଡକ୍ଟର କ୍ଷେତ୍ରବାସୀ ନାୟକ
ସଂପାଦିତ



ପୁସ୍ତକ ଭଣ୍ଡାର

# ଶ୍ରୀଜଗନ୍ନାଥ ପଦ୍ୟାବଳୀ

( ଜଣାଣ ସମଗ୍ର — ତୃତୀୟ ଖଣ୍ଡ )

ସଙ୍କଳନ ଓ ସମ୍ପାଦନା

**ଡକ୍ଟର କ୍ଷେତ୍ରବାସୀ ନାୟକ**, ଏମ୍. ଏ., ପିଏଚ୍.ଡ଼ି.

ଅଧ୍ୟାପକ, ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ,

ରେଭେନ୍ସା କଲେଜ, କଟକ

**ପୁସ୍ତକ ଭଣ୍ଡାର**

ବ୍ରହ୍ମପୁର - ୧,

ବାଙ୍କାବଜାର, କଟକ - ୨

# ଶ୍ରୀଜଗନ୍ନାଥ ପଦ୍ୟାବଳୀ

ତୃତୀୟ ଭାଗ

ଡକ୍ଟର **କ୍ଷେତ୍ରବାସୀ ନାୟକ**
ସଂପାଦିତ

ପ୍ରକାଶକ :
**ଶ୍ରୀ ନିତ୍ୟାନନ୍ଦ ଦାସ**
**ପୁସ୍ତକ ଭଣ୍ଡାର**
ବ୍ରହ୍ମପୁର - ୧,
ବାଙ୍କା ବଜାର, କଟକ - ୨

ମୁଦ୍ରାକର :
**ନଭ୍ ଷ୍ଟୋର୍ ପ୍ରେସ୍**
ବ୍ରହ୍ମପୁର - ୧

ପ୍ରଥମପ୍ରକାଶ :
**ଓଢ଼ଣ ଷଷ୍ଠୀ, ୧୯୭୮**

## SRI JAGANNATH PADYAVALI

Volume III

Compiled and Edited by :
*Dr. Kshetrabasi Nayak*, M. A, Ph. D.
Deptt. of Oriya,
Revenshaw College,
Cuttack - 753003

Published by :
*Sri Nityananda Das*
PUSTAK BHANDAR
Berhampur - 760001,
Banka Bazar, Cuttack - 753002

Date of Publication :
*5 th. December, 1978*

Rs 10 P 00

ଶ୍ରୀଯୁକ୍ତ କାଶୀନାଥ ସିଂହାଙ୍କ ପୁଷ୍ଟାଳକ, ପୂଜନୀୟେଷୁ...
ନିବେଦନ କରୁଛି, ଆମର ଏଇ ନୈବେଦ୍ୟ-ସାମଗ୍ରୀଟିକ
ଟକାଡୋଲାଙ୍କୁ ଲଗି କରେଇ ଦେବେ । ଇତି ।

ପ୍ରଣତ
॥ କ୍ଷେତ୍ରବାସୀ ॥

# ନିବେଦନ

ଶ୍ରୀ ଜଗନ୍ନାଥଙ୍କ କରୁଣାରୁ ପଦ୍ୟାବଳୀର ତୃତୀୟ ଭାଗ ଏବେ ପ୍ରକାଶ ପାଉଛି । ପୂର୍ବରୁ ଏହାର ପ୍ରଥମ ଭାଗ (୧୯୭୭, ଜୁଲାଇ) ଓ ଦ୍ୱିତୀୟ ଭାଗ ( ୧୯୭୮, ଜାନୁଆରୀ )ରେ ପ୍ରକାଶ ପାଇଥିଲା । ଯୁଗ-ଯୁଗରୁ ସ୍ଫୁରିତ କବିକୁଳଙ୍କ ଆତୁର ଆକୂତିର ମର୍ମବାଣୀ ପଦ୍ୟାବଳୀର ଛନ୍ଦେ ଛନ୍ଦେ ଯେପରି ପ୍ରକାଶ ପାଇଛି, ତାହାର ଏକ ସମୃଦ୍ଧ ସଂକଳନ ହେଉଛି ଏହି ଗ୍ରନ୍ଥ । ଜାତିର ଇଷ୍ଟ ଶ୍ରୀ ଜଗନ୍ନାଥଙ୍କ ପାଇଁ ଏହା ହେଉଛି ମାଟିର କବିକୁଳଙ୍କ ନୈବେଦ୍ୟ; ତାହାକୁ ମାଳାକାର ଭଳି ଗ୍ରନ୍ଥି ଦେଇ ଭାବ-କୁସୁମର ମାଳାଟିକୁ ଶ୍ରୀଜୀଉଙ୍କ ଅଙ୍ଗଲଗା ସେବକଙ୍କ ହାତରେ ଅର୍ପଣ କରୁଛି, ଠାକୁରଙ୍କୁ ଲାଗି କରେଇଦେବା ପାଇଁ । ପ୍ରକାରାନ୍ତରେ ଏହା ସମସ୍ତଙ୍କ ପାଇଁ ଇଷ୍ଟ ଅର୍ଚ୍ଚନାର ଏକ ସୁଯୋଗ ସୃଷ୍ଟି କରୁଛି । ଦେଶର ଅଗଣିତ ଜଗନ୍ନାଥ-ପ୍ରେମୀ ସେବକଙ୍କ ଅନ୍ତରରେ ଏହା ଯେ ବେଶ ଉନ୍ମାଦନା ସଞ୍ଚାର କରୁଛି ତାର ଆଭାସ ମୁଁ ପାଉଛି । ସବୁ ସେଇ ଜଗନ୍ନାଥଙ୍କର କୃପା ।

ଏପରି ଉଦ୍ୟମର ଅନ୍ତରାଳରେ ପ୍ରଚ୍ଛନ୍ନ ସଂରକ୍ଷିତ ଅଭିଳାଷଟି ଏହି ଯେ—ଓଡ଼ିଆ କବିମାନଙ୍କ ଲେଖା ଜଣାଣ ପଦ୍ୟାବଳୀର ସମ୍ଭାର କେତେ, ତାହାର କଳନା କରିବା । ଜଣାଣ, ଭଜନ, ସ୍ତୁତି, କୀର୍ତ୍ତନ, ଚଉପଦୀ, କୋଇଲି, ଚଉତିଶା ଇତ୍ୟାଦି ବିଭାଗରେ ସଂଗୃହୀତ ପଦ୍ୟାବଳୀରୁ ଓଡ଼ିଆ-ପଦ୍ୟାବଳୀ-ସାହିତ୍ୟର ପ୍ରାଚୁର୍ଯ୍ୟ ଠିକଣା କରାଯାଇ ପାରେ । ବିଭାଗ-ଭିତ୍ତିରେ ଏଗୁଡ଼ିକ ସଂଗୃହୀତ ହୋଇ ପ୍ରକାଶ ପାଇଲେ, ଗବେଷଣା ପାଇଁ ବାଟ ଫିଟିବ ଏବଂ ଗବେଷକ ମାନଙ୍କୁ ପଦ୍ୟାବଳୀ ସଂଗ୍ରହ ଲାଗି ଯଥେଷ୍ଟ ସମୟ ବା ଶ୍ରମ ବିନିଯୋଗ କରିବା ପ୍ରୟୋଜନ ହେବ ନାହିଁ । ବରଂ ସେମାନେ ଏହାର ମୂଲ୍ୟାୟନରେ ଅଧିକ ଶକ୍ତି ଖଟେଇବାକୁ ପ୍ରବୃତ୍ତ ହେବେ । କାଳକ୍ରମେ ଗବେଷଣାର ଧାରାରେ ଓଡ଼ିଆ ପଦ୍ୟାବଳୀର ଅଭିଜାତ ସୌନ୍ଦର୍ଯ୍ୟ ସମ୍ପର୍କରେ ଭବିଷ୍ୟତ ବଂଶଧର ଗଣ ଅବହିତ ହୋଇପାରିବେ ।

ପ୍ରଥମରୁ ଏମିତି ଅନେକ ଉଦ୍ଦେଶ୍ୟକୁ ଆଖି ଆଗରେ ରଖି ଯୋଜନାଟିକୁ ହାତକୁ ନିଆଯାଇଥିଲା । ଏହା ସଂସ୍କୃତି ପ୍ରାଣ ଉକ୍ତଳୀୟଙ୍କ ପାଇଁ ଖୁବ୍ ଉପାଦେୟ ହୋଇଛି, ପଦ୍ୟାବଳୀର ଜନପ୍ରିୟତା ବଢ଼ିଛି । ଏ ଦିଗରେ କାର୍ଯ୍ୟ କରିବା ଲାଗି ମଧ୍ୟ ଅନେକ ଅନୁପ୍ରେରିତ ହୋଇଛନ୍ତି । ବସ୍ତୁତଃ ଶ୍ରୀ ଜଗନ୍ନାଥଙ୍କ ଇଚ୍ଛା ନଥିଲେ କୁଶ କଅଁଳେ ନାହିଁ; ତାଙ୍କର ଇଚ୍ଛାର ପରିଣାମ ଇଏ ।

ମୋର ପ୍ରିୟତମ ବନ୍ଧୁ ଶ୍ରୀ ନିତ୍ୟାନନ୍ଦ ଦାସ ଏଥିପାଇଁ ବ୍ରତନିଷ୍ଠ । ତାଙ୍କର ଅଭିପ୍ସା ଯେ, ଏହା ଜଗନ୍ନାଥ-ସଂସ୍କୃତି ପ୍ରଚାରର ଏକ ଅବଲମ୍ବନ ହେଉ ଏବଂ ଲୋକେ ଜଗନ୍ନାଥ ଭାବନାରେ ମୁଗ୍ଧ ହୁଅନ୍ତୁ । ସେଥିପାଇଁ ଶ୍ରୀ ଜଗନ୍ନାଥ ପଦ୍ୟାବଳୀର ପ୍ରକାଶନ ପର୍ଯ୍ୟାୟକ୍ରମେ ଚାଲିଛି । ଏହା କେଉଁଠି ପହଞ୍ଚିବ, ସବୁ ଜଗନ୍ନାଥଙ୍କୁ ଜଣା !

ଏଇ ତୃତୀୟ ଭାଗରେ ୧୭ଶ / ୧୮ଶ ଶତାବ୍ଦୀର ସତର ଜଣ କବିଙ୍କର ବାଉନଟି ଜଣାଣ ସଂକଳିତ ହୋଇଛି । ପରବର୍ତ୍ତୀ ଚତୁର୍ଥ ଭାଗରେ ଏହି କାଳର ଅନ୍ୟାନ୍ୟ କବିମାନଙ୍କର ରଚନା କ୍ରମାନ୍ୱୟରେ ସଂଯୋଜିତ ହେବ ।

ଯୋଜନାଟିକୁ ଆଗେଇ ନେବା ପାଇଁ ପୁସ୍ତକ ଭଣ୍ଡାରର ତତ୍ପରତାକୁ ଧନ୍ୟ କହିବି ! ଅନୁଷ୍ଠାନର କର୍ତ୍ତୃପକ୍ଷଙ୍କ ଠାରେ ମୁଁ କୃତଜ୍ଞ । ବହୁ ହିତାକାଙ୍‌କ୍ଷୀ ବନ୍ଧୁ, ଶ୍ରଦ୍ଧେୟ ଗୁରୁ-ବର୍ଗ ମୋତେ ବିଭିନ୍ନ ସମୟରେ ସାହାଯ୍ୟ କରିଛନ୍ତି । ସେମାନଙ୍କର ଋଣ ମୁଁ ମର୍ମେ ମର୍ମେ ସ୍ୱୀକାର କରୁଛି ।

ଆଶା ରଖିଛି; ଦେଶର ପାଠକ ସମାଜ ଏହାର ସୁଫଳ ଭୋଗ କରନ୍ତୁ, ଜଗନ୍ନାଥ-ଚେତନାର ବ୍ୟାପ୍ତି ଘଟୁ ! ଜୟ ଜଗନ୍ନାଥ !

ସ୍ମାରସ୍ୱତ ନିଳୟ
୫, ଡିସେମ୍ବର, ୧୯୭୮
କଟକ

ଇତି ।
ବିନୀତ
**କ୍ଷେତ୍ରବାସୀ ନାୟକ**

# ଜାତିର ଇଷ୍ଟ ଓ ମାଟିର କବି

ଜାତିର ଇଷ୍ଟ ଶ୍ରୀ ଜଗନ୍ନାଥଙ୍କ ଐଶ୍ୱର୍ଯ୍ୟ ଓ ମାଧୁର୍ଯ୍ୟର ନିତ୍ୟନାଦ ରୂପେ ବୁଡ଼ିଥିବା ଏ ମାଟିର କବିଗଣ ବିଶ୍ୱାସ କରିଛନ୍ତି ଯେ, ସମାଜ ତାଙ୍କର ସାହାପକ୍ଷ ନୁହେଁ । ଭାଇ ବନ୍ଧୁ ସଖା-ସୋଦର ସମସ୍ତେ ପର; କେବଳ ଭବଗ୍ରାହୀନାଥ ଜଗନ୍ନାଥେ ହୋଇଛନ୍ତି ତାଙ୍କ ପାଇଁ ଏକାନ୍ତ ଆପଣାର ( ଜଣାଣ ନଂ ୧୩୦ ) । ଏଥିପାଇଁ କବିମାନଙ୍କ ମନରେ ଜାଗିଛି ଜଗନ୍ନାଥ ଆସଙ୍ଗଲିପ୍ସା । ଏହା ଏକ ସାତ୍ତ୍ୱିକ ଆକର୍ଷଣ । ଏଥିରେ ଐଶ୍ୱର୍ଯ୍ୟ ପ୍ରାପ୍ତିର ଅଭିଳାଷ ନାହିଁ, ସମ୍ମାନ-ଧନର ଭୂଷଣ ପାଇଁ ବ୍ୟାକୁଳତା ବି ନାହିଁ; ବରଂ ଅଛି 'ଦେହବର' ଲାଭ ଲାଗି ଆତୁର ଅଭିପ୍ରାୟ । ଏତକ ଯିଏ ପାଇଛି ସେ ଜଗନ୍ନାଥଙ୍କୁ ମହାଦାନୀ ବୋଲି ଅଭିହିତ କରିଛି — 'ତୁମ୍ଭ ସମାନ ଦାନୀ, ନାହାନ୍ତି ନା ଅବନୀ / ଅଧମ ଜନ ରକ୍ଷ ହେ ଯଦୁପତି ! / ଅତ୍ୟନ୍ତ ତୁ ନିର୍ମଳ, ତୋ ପାଦେ ମୁଁ ନିର୍ମଳ / ନୀଳକଣ୍ଠ ଅଜ୍ଞାନ ଏତେ ମାଗୁଛି' ( ଜଣାଣ ନଂ ୧୨୮ ) ।

କବିମାନଙ୍କର ଧାରଣା ଯେ, ସ୍ୱଚ୍ଛତା ସହିତ ସ୍ୱଚ୍ଛତାର ମିଳନ ହିଁ ସମ୍ଭବ । ଯିଏ ପବିତ୍ର ଓ ନିର୍ମଳ ସିଏ ସିନା ପାବନ ଶକ୍ତିର ସାନ୍ନିଧ୍ୟ ପାଇବା ପାଇଁ ଯୋଗ୍ୟ ! ଏଇ ଯୋଗ୍ୟତା ଲାଭ ପାଇଁ ପଦ୍ୟାବଳୀର ଓଡ଼ିଆ କବି-କୁଳ ବ୍ୟଗ୍ର । ସେମାନେ ବ୍ୟଥିତ ଯେ, କରୁଣା-[illegible]ଙ୍କର କରୁଣା ଉଣା ହୋଇଗଲେ ଜୀବନ ତରୀକୁ କୂଳରେ ଲଗେଇବା ମୁସ୍କିଲ । ସେଥିପାଇଁ ବ୍ୟକ୍ତିଗତ ଭାବନାରୁ ସବୁ ପ୍ରକାର ଅଭିମାନର ସ୍ୱର କଂପିତ କଣ୍ଠରେ ପଦ୍ୟାବଳୀର ଛନ୍ଦେ ଛନ୍ଦେ ସ୍ଫୁରିତ ହୋଇଥିବା ଦେଖାଯାଏ । କିନ୍ତୁ ଏହି ଅଭିମାନର ଭାଷା ଯେତେ ତାତ୍ପର୍ଯ୍ୟଭରା ଓ ତୀର୍ଯ୍ୟକ ହୋଇ ପଡ଼ିଛି ଖୁବ୍ ହୃଦୟସ୍ପର୍ଶୀ ।

ତେବେ ଏପରି ଅଭିମାନର କାରଣ କଣ ? କବିଙ୍କର ଯୁକ୍ତି ହେଲା, ଜଗବନ୍ଧୁଙ୍କୁ ଜଗତରନାଥ କହିବା ମିଛ । ଦାତା ବୋଲି ଗଣିବା ମଧ୍ୟ ମାପୁ । କାରଣ ସେ ଦିଅନ୍ତି ପୁଣି ଲୁଟି ନିଅନ୍ତି । ବଳିଠାରୁ ଦାନ ନେଲେ ସୁଦାମାଙ୍କୁ ଦେଲେ, ଶ୍ରୀବତ୍ସଙ୍କର ନେତ୍ର ନେଲେ ଅନ୍ଧକୁ ଚକ୍ଷୁ ଦେଲେ । ଗୋପୀଙ୍କ ବସ୍ତ୍ର ହରଇ

ଦ୍ରୌପଦୀଙ୍କୁ ସିଝାଇଲେ । କୁବଳୟା ହସ୍ତୀକ ସଂହାରିଲେ, କୁମ୍ଭୀର ଗ୍ରାସରୁ ଗଜକୁ ଉଦ୍ଧାରିଲେ । ଏମିତି କେତେ ବିଚିତ୍ର ତାଙ୍କର ଆଚରଣ । ତଥାପି କବିଙ୍କର ବିଶ୍ୱାସ ଯେ, ଦିଆନିଆର ଭାଗଫଳ ସମାନ ହେଉ ପଛେ ଜଗନ୍ନାଥେ ହେଉଛନ୍ତି ତାଙ୍କର ପାଳନକାଂକ୍ଷୀ ଓ ପୋଷଣାହାକ୍ଷୀ !

ଏହି ବିଶ୍ୱାସରେ ମଳାଧ୍ରୂଳ ନାହିଁ । ଯେତେ ଯାତନା ମିଳୁ ପଛେ ଭକ୍ତ କବିଙ୍କର ଏକାନ୍ତ କାମନା ଯେ, ଜଗବନ୍ଧୁଙ୍କର ଭରସା ମିଳିଗଲେ ସବୁ କ୍ଷତ, ଚନ୍ଦନରେ ପରିଣତ ହୋଇଯିବ । କିନ୍ତୁ ଦୁଃଖ ରହୁଛି ଏଇଠି— କପୋଳ ପରି ଝୁରି ଝୁରି ସୁମରି ସୁମରି ମଧ୍ୟ ହୃଦୟର ତାପ କି ମନର ମୋହ ଊଣା ହେଉନାହିଁ । ଶୋକ ମୋହରେ ଘନ ଘନ ଆଚ୍ଛନ୍ନ ହେଉଛି କବି ମନ । ସଂସାର ହିଁ ପଦ୍ୟାବଳୀର ଆର୍ତ୍ତୀ କବିଙ୍କ ପାଇଁ ଶୋକର ମହାସମୁଦ୍ର । ଏଣୁ ସଂସାରରୁ ପାରିକରିବା ଲାଗି ଜଗବନ୍ଧୁଙ୍କ ଏତେ ଆକୁଳ ନିବେଦନ ।

ପୁନଶ୍ଚ କବିଙ୍କର ଅଭିଯୋଗ ଯେ, ଦିନକୁ ଦିନ ସମାଜରେ ଦରିଦ୍ରତମଙ୍କ ସଂଖ୍ୟାବୃଦ୍ଧି ଘଟିବାରୁ ଜଗବନ୍ଧୁଙ୍କର ସିଂହଦ୍ୱାରରେ କୃପାପ୍ରାର୍ଥୀ-ମାନଙ୍କର ଭିଡ଼ ଜମୁଛି । ଯିଏ ସ୍ୱଭାବତଃ ଦୀନଜନ ବନ୍ଧୁ ଆରତହାରୀ ସିଏ ଏତେ ଲୋକଙ୍କୁ ସମ୍ଭାଳି ନପାରି ସମ୍ଭବତଃ ବାଧ୍ୟ ହୋଇ ଦାରୁଣ ହେଉଛନ୍ତି କିମ୍ବା ଦୀନାର୍ତ୍ତୀଙ୍କୁ କୃପାଧନ ବାଣ୍ଟି ବାଣ୍ଟି ରତ୍ନଭଣ୍ଡାର ଶୂନ୍ୟ ହୋଇଗଲାଣି ବୋଲି ତାଙ୍କ ଦୁଆର ଆଉ ଖୋଲୁନାହିଁ ( ଜଣାଣ ନଂ ୧୩୯ ) ।

ଏହା ଯଦି ସତହୁଏ, ତେବେ ପଦ୍ୟାବଳୀର କବିଙ୍କ ଦୃଷ୍ଟିରେ ଦୟାସାଗର ଜଗନ୍ନାଥଙ୍କର ଶକ୍ତି କଣ ସୀମିତ ନା ସେ କୃପା କୃପଣ ? ଏହା କେବଳ ଅଭିମାନୀ ଭକ୍ତର ଅଭିବ୍ୟକ୍ତି ମାତ୍ର । ଅଭିଯୋଗର ଅନ୍ତର୍ଭୂମିରେ ଏଠି ଛପି ରହିଛି ଉପଲବ୍ଧିର ନିର୍ଭୁଲ ସଂକେତ । ପ୍ରାଣର ପ୍ରିୟତମ ଜଗନ୍ନାଥଙ୍କୁ ପଦ୍ୟାବଳୀର କବି ନାନା ଉପଲକ୍ଷ୍ୟ ଦେଇ ଚିହ୍ନାଇ ଚିହ୍ନାଇ ଶେଷରେ ମୁକ୍ତ କଣ୍ଠରେ ଚେତେଇ ଦେଇଛନ୍ତି ଯେ— 'ପୂରି ରହିଅଛି କରୁଣା ସମୁଦ୍ର ସରିଯିବ ତହୁଁ କେତେ / କୁଶାଗ୍ର ବିନ୍ଦୁରେ ସୁଖୀ ହୋଇବି ମୁଁ, କୋଟିଜନ୍ମ ପରିଯନ୍ତେ ( ଜଣାଣ ନଂ ୧୪୦ ) ।'

ଏତେ ବିଭବ ଓ ଐଶ୍ୱର୍ଯ୍ୟରେ ଅନନ୍ତ ଭଣ୍ଡାର ଥାଇ ଜଗନ୍ନାଥେ ଯଦି ଅନୁଗତଙ୍କ ଦୁଃଖ ଫେଡ଼ିବାକୁ ପଶ୍ଚାଦପଦ, ତେବେ କବିର ବିସ୍ମୟ ହେଉଛି ;

— 'କାହାକୁ ମୁଁ କରିବଇଁ ସାକ୍ଷୀ ହେ ଚକାଆଖି ।' (ନିଶାଣ ନଂ ୧୪୧) । ଚକାଆଖିଙ୍କ ବିନା ଆଜି କିଏ ତାଙ୍କର ସାହାପକ୍ଷ ଯେ ଖେଦ ଜଣାଇଲେ ଉଦ୍ଧାର ଲାଗି ଗୁହାରି କରିବେ ? ପଦ୍ୟାବଳୀର କବିମାନଙ୍କର ବକ୍ତବ୍ୟ ହେଉଛି — ସେମାନେ ଯାହାଙ୍କର ପାଦସେବା କରି ତପସ୍ତ୍ରୀରେ ଜୀବନ ବିତେଇଲେ ତାହାଙ୍କୁ ଯଦି ଜଗନ୍ନାଥେ ଘୋର ସଙ୍କଟରୁ ଉଦ୍ଧାର ନ କରିବେ ତେବେ ତାହା ପକ୍ଷପାତି ଦୋଷ ହେବ ନାହିଁ କି ?

କବିଙ୍କର ଏପରି ବକ୍ତବ୍ୟରୁ ଯେଉଁ ମନୋଭାବର ପରିଚୟ ମିଳିଥାଏ ତାହା କେବଳ ଜଣେ ଶରଣାଗତ କିଙ୍କରର ମନୋଭଙ୍ଗୀ ନୁହେଁ, ଭୟ-ବିମୁକ୍ତ ଏବଂ ନିର୍ମଳ ଚିତ୍ତ ବିଶ୍ୱାସୀ ସେବକର ଉକ୍ତି ।

ଅତଏବ ମନେହୁଏ ଯେ, ପଦ୍ୟାବଳୀର କବିଗଣ ଜଗନ୍ନାଥଙ୍କୁ ଯେଉଁ କଣ୍ଠରେ ଗୁହାରି ଜଣାଇଛନ୍ତି ତାହା ଜ୍ଞାନ-ପ୍ରବୁଦ୍ଧ କୌଣସି ଯୋଗୀର ନୁହେଁ, ସାଂସାରିକ ମାୟାବର୍ତ୍ତରେ ପ୍ରପୀଡ଼ିତ ଭଗବତ୍ ବିଳାସୀର । ଏଣୁ ଏହା ସ୍ପଷ୍ଟ ଯେ, ପଦ୍ୟାବଳୀର କବିଗଣ ଜଣେ ଜଣେ ସଂସାରାସକ୍ତ ମଣିଷ ପୁଣି ଇଷ୍ଟପ୍ରାଣ ତପସ୍ୱୀ । ଏମାନଙ୍କର ମାନସ-ଭୂମି ଏହି ଦୁଇଟି ଅବସ୍ଥାର ପ୍ରତିଫଳନରେ ପୁଷ୍ଟ । ସଂସାରୀ ହେଉ କି ତପସ୍ୱୀ ହେଉ; ତାଙ୍କ ପାଇଁ ଜଗନ୍ନାଥେ ହେଉଛନ୍ତି — ଧ୍ୟାନ, ଜ୍ଞାନ ଓ ମୁକ୍ତି ଦାତା ଭଗବାନ (ନିଶାଣ ନଂ ୧୬୧) ।

ଜଗନ୍ନାଥଙ୍କୁ ନାନାମତେ ନିବେଦନ କରି ଯଦି କବିମାନେ ବାଞ୍ଛିତ ଫଳ ଭୋଗରେ ବିଫଳ ହୋଇଛନ୍ତି, ସେତେବେଳେ ସେମାନଙ୍କର ସ୍ୱବଚନରେ ପ୍ରକାଶ ପାଇଛି ଯେ — "ଭାଲ ପଟେ ଲେଖା କେ ଆନ କରିବ, ଯାହାଥିବ ସେ ଫଳିବ / ଭଗାରି ହସିବେ, ଭଲ ସେ ଥିଲା ଏ ପରି ଘନ ବାନ୍ଧିବ ।" ( ନିଶାଣ ନଂ ୧୬୨ )

ଏତାଦୃଶ ଜିଜ୍ଞାସାରୁ ମନେହୁଏ ଯେ, ପଦ୍ୟାବଳୀର କବି ନିଶାଣ ରଚନାମାନଙ୍କରେ ବ୍ୟକ୍ତିଗତ ଦୈନ୍ୟ ବା ଆତ୍ମପୀଡ଼ାର ଆଭାସ ଦେବା ସଙ୍ଗେ ସଙ୍ଗେ ଏଥିରୁ ମୁକ୍ତ ହେବା ଲାଗି ହରି ଓ ଭଗବାନ — ଦୁଇଶକ୍ତିର ସହାୟତା ଲୋଡ଼ିଛନ୍ତି । ଇଷ୍ଟଙ୍କୁ ନିରନ୍ତର ସ୍ମରି ସ୍ମରି କିମ୍ବା ଅନ୍ତରଙ୍ଗ ଉପାସନା କରିବା ସତ୍ତ୍ୱେ ଯଦି କେବେ ବ୍ୟର୍ଥତା ଆସିଛି, ତେବେ କବିଗଣ

ବୁଝିଛନ୍ତି ଯେ—ଲଲାଟ ଲିଖନ ବଦଳେଇବାକୁ କେହି ନାହିଁ । ଭାଗ୍ୟର ଶକ୍ତି କି କଣ ଭଗବତ୍ ଶକ୍ତି ଡେଇଁପାରେ ?

ଅତଏବ ଏଥିରୁ ପ୍ରତୀତ ହୁଏ ଯେ ଜଣାଣ ରଚୟିତାଗଣ ପ୍ରାୟ ଭାଗ୍ୟବାଦୀ । ଜାଗତିକ ବ୍ୟର୍ଥତା ତାଙ୍କୁ କବଳିତ କରି ଏବଂ ଭାଗ୍ୟ ପ୍ରତିକୂଳ ହେଉଛି ବୋଲି ସେମାନେ ଜଗନ୍ନାଥଙ୍କୁ ଗୁହାରିକର ଅବସ୍ଥାରୁ ମୁକ୍ତ ହେବାକୁ କାମନା ପୋଷିଛନ୍ତି । ତେବେ କଣ ସେମାନେ ସ୍ୱତଃ ପ୍ରବୃତ୍ତ ଭକ୍ତ ନୁହଁନ୍ତି ନା ସେମାନଙ୍କର ଆନୁଗତ୍ୟରେ ଐକାନ୍ତିକତା ନାହିଁ ? କବିମାନଙ୍କର ଭକ୍ତିବୋଧର ପ୍ରଭାବ କେତେ ଗଭୀର — ଏହାର ନିର୍ଣ୍ଣୟ; ଉପଲବ୍ଧି ଓ ବିଶ୍ଳେଷଣ ଉପରେ ନିର୍ଭର କରେ । ପଣ୍ଡିତର ଦୃଷ୍ଟି ଏବଂ ସମ୍ବେଦନାର ହୃଦୟ — ଉଭୟଙ୍କର ସହାୟତା ବିନା ଏହାକୁ ଯଥୋଚିତ ମୂଲ୍ୟ ଦେଇ ବିଚାର କରିବା ସମ୍ଭବ ନୁହେଁ । କାରଣ ଜ୍ଞାନ ଓ ପ୍ରେମ — ଉଭୟର ତ ସମାହାର ଏଇଠି ।

ସାରସ୍ୱତ ନିଳୟ
**ପ୍ରଥମାଷ୍ଟମୀ — ୧୯୭୮**
କଟକ

**କ୍ଷେତ୍ରବାସୀ ନାୟକ**

# ପଦ୍ୟାବଳୀ ସଂକେତ

**ବିଷୟ** **ପୃଷ୍ଠା**

କଣ୍ଟକେନ୍ଦ୍ର ହନ୍ମାନ ସ୍ବସ୍ତୁନ୍ତୁ



ଗୋବିନ୍ଦ ବସ୍ତୁନ୍ତୁ

## ॥ ନମୋସ୍ତୁତସ୍ମୈ ପୁରୁଷୋତ୍ତମାୟ ॥

ଯନ୍ମ ଗତୋ ଯାନ୍ତି ଜଗତ୍ ପ୍ରକାଶଂ
ନଦ୍ରାୟୁମାଣେ ପୁନରେବ ଯସ୍ମିନ୍ ।
ନଲ୍ଲୀୟୁମାନଂ ଭବନ୍ତି କ୍ଷଣେନ
ନମୋସ୍ତୁତସ୍ମୈ ପୁରୁଷୋତ୍ତମାୟ ।

( ଗଜପତି ବଂଶଧର ଦାମୋଦର ଦେବଙ୍କର
ଶିଳାଲେଖରୁ ଏଇ ସ୍ତବଟି ଉଦ୍ଧୃତ;
ସମୟ ୧୨୩୪ ଖ୍ରୀଷ୍ଟାବ୍ଦ )

# ଶ୍ରୀ ହର ଶରଣାଷ୍ଟକ

ଧ୍ୟେୟଂ ବଦନ୍ତି ଶିବମେବହି କେଚିଦନ୍ୟେ
ଶକ୍ତିଂ ଗଣେଶମପରେତୁ ଦିବାକରଂ ବୈ
ରୂପୈସ୍ତୁ ତୈରପି ବିଭାସି ଯତସ୍ତ୍ୱମେବ
ତସ୍ମାତ୍ତ୍ୱମେବ ଶରଣଂ ମମ ଶଙ୍ଖପାଣେ । ୧ ।

ନ ସୋଦରୋ ନ ଜନକୋ ଜନନୀ ଚ ଜାୟା
ନୈବାତ୍ମଜୋ ନ ଚକୁଳଂ ବିପୁଳଂ ବଳଂ ବା
ସନ୍ଦୃଶ୍ୟତେ ନ କିଳ କୋଽପି ସହାୟକୋମେ
ତସ୍ମାତ୍ତ୍ୱମେବ ଶରଣଂ ମମ ଶଙ୍ଖପାଣେ । ୨ ।

ନୋପାସିତା ମଦମପାସ୍ୟ ମୟା ମହାନ୍ତଃ
ତୀର୍ଥାନି ଚାସ୍ତିକଧିୟା ନହି ସେବିତାନି
ଦେବାର୍ଚ୍ଚନଂ ଚ ବିଧିବନ୍ନ କୃତଂ କଦାପି
ତସ୍ମାତ୍ତ୍ୱମେବ ଶରଣଂ ମମ ଶଙ୍ଖପାଣେ । ୩ ।

ଦୁର୍ବାସନା ମମ ସଦା ପରିକର୍ଷୟନ୍ତି
ଚିତ୍ତଂ ଶରୀରମପି ରୋଗଗଣା ଦହନ୍ତି
ସଞ୍ଜୀବନଂ ଚ ପରହସ୍ତଗତଂ ସଦୈବ
ତସ୍ମାତ୍ତ୍ୱମେବ ଶରଣଂ ମମ ଶଙ୍ଖପାଣେ । ୪ ।

ପୂର୍ବଂ କୃତାନି ଦୁରିତାନି ମୟା ତୁ ଯାନି
ସ୍ମୃତ୍ୱାଽଖିଳାନି ହୃଦୟଂ ପରିକମ୍ପତେ ମେ ।
ଖ୍ୟାତା ତେ ପତିତପାବନତା ଯସ୍ମାତ୍
ତସ୍ମାତ୍ତ୍ୱମେବ ଶରଣଂ ମମ ଶଙ୍ଖପାଣେ । ୫ ।

ଦୁଃଖଂ ଜରାଜନନଜଂ ବିବିଧାଶ୍ଚ ରୋଗାଃ
କାକଶ୍ୱ ସୂକରଜନ ନରକେ ଚ ପାତଃ
ତେ ବିସ୍ମୃତେଃ ଫଳ ମିଦଂ ବିତତଂ ହି ଲୋକେ
ତସ୍ମାତ୍ତ୍ୱମେବ ଶରଣଂ ମମ ଶଙ୍ଖପାଣେ ।୬।

ମାତୋଽପି ପାପ ବଳିତୋଽପି ବିନନ୍ଦିତୋଽପି
ଦୃଷ୍ଟ୍ୱାଭବାଦୃଶମିତ ଯସ୍ତୁ କଳୈକ ବାରମ୍
ତଂ ଯକ୍ଷସୀଶ ନିଜଲୋକମିତ ବ୍ରତଂ ତେ
ତସ୍ମାତ୍ତ୍ୱମେବ ଶରଣଂ ମମ ଶଙ୍ଖପାଣେ ।୭।

ବେଦେଷୁ ଧର୍ମଂ ବଚନେଷୁ ତଥାଗମେଷୁ
ରାମାୟଣେଽପି ଚ ପୁରାଣ କଦମ୍ବକେ ବା
ସର୍ବତ୍ର ସର୍ବବିଧିନା ଗଦିତସ୍ତ୍ୱମେବ
ତସ୍ମାତ୍ତ୍ୱମେବ ଶରଣଂ ମମ ଶଙ୍ଖପାଣେ ।୮।

[ ଶ୍ରୀ ଶଙ୍କରାଚାର୍ଯ୍ୟ (ଅଷ୍ଟମ ଶତାବ୍ଦୀ) କୃତ
ଶ୍ରୀ ହରି ଶରଣାଷ୍ଟକ ]

# ବିପ୍ର କଣ୍ଠ ଦାସ

( ୧୭ଶ ଶତାବ୍ଦୀ )

କବି, ଏହି ନାମରେ ପରିଚିତ ହୋଇଥିଲେ ମଧ୍ୟ ତାଙ୍କର ପ୍ରକୃତ ନାମ ହୋଇଛି, ନୀଳକଣ୍ଠ । ମଧ୍ୟ-ଯୁଗର ଓଡ଼ିଆ ସାହିତ୍ୟ ଇତିହାସରେ କବି କଣ୍ଠଦାସ ପୋଇ ଛାନ୍ଦର ରଚୟିତା ରୂପେ ବେଶ୍ ଲୋକପ୍ରିୟ । ତାଙ୍କର ପ୍ରସିଦ୍ଧ କୃତି 'ନଅପୋଇ' ଏକ ସମ୍ମାନିତ ଗ୍ରନ୍ଥ । ଏତଦ୍ ଭିନ୍ନ, କବି 'ସମାର୍ଚ୍ଚନ ଚନ୍ଦ୍ରିକା' ନାମକ ଏକ ଭକ୍ତିମୂଳକ କାବ୍ୟ-ଗ୍ରନ୍ଥର ସ୍ରଷ୍ଟା ଏବଂ କେତେକ ପଦ୍ୟାବଳୀ ଓ 'ଶହେ ପଦଆ'ର ରଚୟିତା ।

'ବ୍ରଜବିହାର' କାବ୍ୟ-ଗ୍ରନ୍ଥର କବି ଦାଶରଥି ଦାସ (୧୮ଶ ଶତାବ୍ଦୀ) ହୋଇଛନ୍ତି ବିପ୍ର ନୀଳକଣ୍ଠ ଦାସ (କଣ୍ଠଦାସ)ଙ୍କର ଶିଷ୍ୟ । କବି ଦାଶରଥି, ଗୁରୁ-ଦେବଙ୍କୁ କଣ୍ଠଦାସ ଗୋସାଇଁ ବୋଲି ସମ୍ବୋଧନ କରୁଥିଲେ — କଣ୍ଠଦାସ ଗୋସାଇଁଙ୍କ ଚରଣ ଆଶ୍ରୟେ/ଦାଶରଥି ଦାସ ର ଯେ ସ୍ଫୁରିତ ହୃଦୟେ ।' ଏହି କଣ୍ଠ ଦାସ, ତାଙ୍କ ରଚିତ ଗ୍ରନ୍ଥମାନଙ୍କର ଭଣିତାରେ ଆପଣାକୁ ନୀଳକଣ୍ଠ ଦାସ / ନୀଳକଣ୍ଠ ଖାଡ଼ଙ୍ଗା / କଣ୍ଠ ଖାଡ଼ଙ୍ଗା ପ୍ରଭୃତି ନାମରେ ଚିହ୍ନିତ କରିଥିବା ଆଲୋଚକ ପଣ୍ଡିତ ନୀଳମଣି ମିଶ୍ର ଉଲ୍ଲେଖ କରନ୍ତି । ଜଣେ ବ୍ୟକ୍ତି; କିନ୍ତୁ ଏକାଧିକ ନାମ—ଏହା ମଧ୍ୟ ଆଲୋଚକଙ୍କର ପ୍ରତିପାଦନରୁ ଜଣାଯାଏ । ବିପ୍ରକଣ୍ଠ ଦାସ, ଜ୍ଞାନ ମିଶ୍ରା ପ୍ରେମ ଭକ୍ତିର ଉପାସକ । ତେଣୁ ତାଙ୍କ ପଦ୍ୟାବଳୀରେ ଉତ୍କଳୀୟ ବୈଷ୍ଣବ ଦର୍ଶନର ପ୍ରତିଫଳନ ମିଳିଥାଏ ।

## ୧୨୭

କର ପରିତ୍ରାଣ, କରୁଣା ସାଗର ଆପଣ । ପଦ ।

କାକୁସ୍ଥବର ହୋଇ   କର ଯୋଡ଼ି ଜଣାଇ
କଷ୍ଟ ମୋ ଫେଡ଼ ଆପଣ ।।୧।।

ଖଗତିଳକ କାନ୍ତ   ଖଣ୍ଡ ହେ ମୋ ଦୁର୍ଗତି
ଖେଦ ଜଳେ ଗଲି ଭାସିଣ ।।୨।।

ଗଜରାଜଙ୍କୁ ଜଳେ   ଗ୍ରାହ ଗ୍ରାସିବା କାଳେ
ପେଷି ଚକ୍ର ଛେଦିଲ ପୁଣ ।।୩।।

ଘୋର ବିପତ୍ତି ଦେଖି   ଧୁଞ୍ଚିଲ ପଦ୍ମ ଆଖି
ବାନା କି ହେବ ଅକାରଣ ।।୪।।

ନିଧନ ସମୟରେ   ନିଷ୍ଠୁର ହେଲ ମୋରେ
ନାଥ କି ହେଲ ନିଦାରୁଣ ।।୫।।

ଚଉଦ ଭୁବନପୁର   ରହିଅଛି ଶ୍ରୀଧର
ଚରଣେ ମୁଁ ଗଲି ଶରଣ ।।୬।।

ଛାଡ଼ି ସକଳ ଆଶା   ତୁମ୍ଭ ପାଦେ ଭରସା
ଭାବେ ନୀଳକଣ୍ଠ ଭାଷଣ ।।୭।।



# ୧୨୮

ଅମ୍ବୁଜ ପାଦ ତଳକୁ ମୋର ବନ୍ଦନ
ଆତଙ୍କେ ଡାକୁଛି ଫେଡ଼ ଦୁର୍ଗତ । ପଦ ।

ଅନ୍ୟ ଭରସା ମୋର ନାହିଁ ହେ ବାନାମ୍ବର
ତୁମ୍ଭ କରୁଣା ହେଲେ ହେବ ନୃପତ । ୧ ।

ଆହେ ଅନାଥନାଥ ଜଗତଜନ ତାତ
ନ ହେଲେ ସାହାପକ୍ଷ ଆଉ କେ ଅଛି । ୨ ।

ଆହେ ପ୍ରଭୁ ଶ୍ରୀହରି ଦୀନ ଦୁଃଖ ନିବାରି
ନ ହେଲେ ସାହାପକ୍ଷ ଯାଉଛି ଭାସି । ୩ ।

ତୁମ୍ଭ ସମାନ ସ୍ୱାମୀ ନାହାନ୍ତି ନା ଅନ୍ତର୍ଯାମୀ
ଅଧମ ଜନ ରକ୍ଷ ହେ ଯଦୁପତି !

ଅତ୍ୟନ୍ତ ତୁ ନିର୍ମଳ ତୋ ପାଦେ ମୁଁ ନିର୍ମଳ
ନୀଳକଣ୍ଠ ଅଜ୍ଞାନ ଏତେ ମାଗୁଛି । ୪ ।

———

# ୧୬୯

ପରମାନନ୍ଦ ଗୋସାଇଁ, ପ୍ରଣାମ କରୁଛୁ ମୁହିଁ ।
ଅଛ ସର୍ବ ଘଟେ ପୂର ପୂର୍ଣ୍ଣବ୍ରହ୍ମ ରୂପ ହୋଇ । ଘୋଷା ।

ପରମାନନ୍ଦ ପଡ ମୋତେ କଷ୍ଟ ବାଧି ଦଶୁ ନାହିଁ
ପ୍ରାଣନାଥ ଥାଉଁ ଥାଉଁ ଅନାଥ ହେଉଛୁ ମୁହିଁ !

ପରମ ପାତକୀ ଶ୍ରେଣୀ ମାନଙ୍କରେ ଶ୍ରେଷ୍ଠ ମୁହିଁ
ପ୍ରାଣ କରୁଛୁ ଅର୍ପଣ ନ ଜାଣ କି ଭାବଗ୍ରାହୀ ।

ପାଶବାର କୃପାରେ ମୁଁ ଭରସା ରଖିଛୁ ନେଇ
ପାଶକର ଆଶା-ନାବ ଦକ୍ଷିଣ ମରୁତ ହୋଇ ।

ପୂର୍ବରୁ ଶୁଣିଛୁ କେତେ ପାପୀମାନେ ମୁକ୍ତ ହୋଇ
ନ ଶୁଣୁଛ ମୋ ଅରଜ ମୂଢ଼ ମାଳକଣ୍ଠ ଧାଉଁ ।

———

# ବୃନ୍ଦାବନ ଦାସ

**( ୧୭ଶ ଶତାବ୍ଦୀ ? )**

କବି ବୃନ୍ଦାବନ ଦାସଙ୍କର ଜୀବନ ଚରିତ ଅଦ୍ୟାବଧି ଅଜ୍ଞାତ । କେହି କେହି କହନ୍ତି ବଂଗଳା ଶ୍ରୀଚୈତନ୍ୟ ଭାଗବତର ରଚୟିତା ବୃନ୍ଦାବନ ଦାସ ହେଉଛନ୍ତି ଏହି ବ୍ୟକ୍ତି । ସେ ବଂଗଳା ଲେଖକ, ଶ୍ରୀବାସ ପଣ୍ଡିତଙ୍କର ନାତି ଏବଂ ନିତ୍ୟାନନ୍ଦଙ୍କର ଶିଷ୍ୟ ଥିଲେ । ନଦିଆ ତାଙ୍କର ନିବାସ ଥିଲା । ମାତ୍ର ଓଡ଼ିଆ ଲେଖକ ବୃନ୍ଦାବନ ଦାସ, ପୁରୀରେ ଶ୍ରୀ ମନ୍ଦିରର ଦକ୍ଷିଣ ପାର୍ଶ୍ୱରେ ବାସ କେବାର ଅଭିଳାଷ ପୋଷିଥିଲେ । ଶ୍ରୀକ୍ଷେତ୍ର ନିବାସୀ ହେବା ତାଙ୍କର ଏକାନ୍ତ କାମନା ଥିଲା । ସମ୍ଭବତଃ ଏମାନେ ଏକା ନାମଧେୟ ଦୁଇ ବ୍ୟକ୍ତି । ଓଡ଼ିଆ ପଦ୍ୟାବଳୀ ସାହିତ୍ୟରେ ବୃନ୍ଦାବନ ଦାସଙ୍କର ନାମ କେବେ କେମିତି ଶୁଣାଯାଏ । ଏ ମହାଶୟ ମଧ୍ୟ ସ୍ୱଳ୍ପଖ୍ୟାତ ଜଣେ ପଦ୍ୟାବଳୀର କବି ।

# ୧୩୦

କହୁଛୁ ଆରତେ ଆହେ ଜଗନ୍ନାଥେ ଏହୁ ଆଜ୍ଞା ମୋତେ ହେଉ ହେ
କୃପାସାଗର କୃପାକର ସତ୍ୱର କ୍ଷେତ୍ରେ ମୋର ମନ ଯାଉ ହେ ।
କେବେ କି ବ ଦର୍ଶନ ହୋଇବ ମୁକତ ଭକତଙ୍କ ସଙ୍ଗେ ମିଶି ହେ
ଖଗପତିନାଥ ଧ୍ୟାନ କରୁଥିବ ଜଗମୋହନରେ ବସି ହେ ।
ଗରୁଡ଼ ସ୍ତମ୍ଭରେ ରହି ଉଲ୍ଲାସରେ ଚାହୁଁଥିବ ଶ୍ରୀମୁଖକୁ ହେ
ଗୋବିନ୍ଦ ଜଗତେ ବୋଲି ଡାକୁଥିବ ଦୂର କରିବ ଦୁଃଖକୁ ହେ ।
ଘୋର କଳିଯୁଗ ଘୋଟି ଆସୁ ଅଛି ତରିବ ତୁମ୍ଭ କୃପାରୁ ହେ
ଘନ ବିପତ୍ତି ହୋଇଲା ଗୃହେ ଗୃହେ ଉଦ୍ଧର ମହିମାସେତୁ ହେ ।
ନାମ କୀର୍ତ୍ତନରେ ତନ୍ମୟ ହୋଇବ କାମନା ପୂର୍ଣ୍ଣ କରିବ ହେ
ନାନା ତୀର୍ଥବାସୀ ତହିଁ ଥିବେ ଆସି ଦେଖି ଦୁରିତ ହରିବ ହେ ।
ଚତୁର୍ଦ୍ଦଶ ଲୋକେ ଆଶ୍ରେ କରିଛନ୍ତି ଯେଉଁ ଅଭୟ ଚରଣ ହେ
ଚଣ୍ଡେ ଦୟାକର ମୁଁ ଯାଇ ସତ୍ୱର ପଶିବ ପାଦେ ଶରଣ ହେ ।
ଛାଇ ପ୍ରାୟେ ହୋଇ ସେବା କରୁଥିବ ସମୟ ଜଗି ସବୁରେ ହେ
ଛକେ ଛକେ ବସି ଧ୍ୟାନ କରୁଥିବ ତପୀ ବୈଷ୍ଣବ ସଙ୍ଗେ ହେ ।
ଜଗବନ୍ଧୁ ଜଗନ୍ନାଥ ଆର୍ତ୍ତତ୍ରାଣ ବୋଲି ନାମ ଧରୁଥିବ ହେ
ଯମ ଯାତନାରୁ ପାର ମୁଁ ହୋଇବ ଦୁଃଖ ସାଗରୁ ତରିବ ହେ ।
ଝଞ୍ଜା ନ ମଣ ମୋର ବକ୍ଷପୁରେ ଜଣାଉଛି ବଳଆଇ ହେ
ଝଟ ଶ୍ରୀମୁଖେ ଆଜ୍ଞା ଦେବ ଯେବେ ରହିବ ନିଶ୍ଚିନ୍ତ ହୋଇ ହେ ।
ନାନା ହରବର କୁଟୁମ୍ବୀ ଜଞ୍ଜାଳ ଲାଗିଗଲା ମୋର କାଳ ହେ
ନୀଳାଚଳ ନାଥ ହେଲି ମୁଁ ଅନାଥ ଭରସା ତୁମ୍ଭେ କେବଳ ହେ ।
ଟାକି ରହିଥିବ ମହାପ୍ରସାଦକୁ କଳ୍ପବଟ ତଳେ ଯାଇ ହେ
ଟେକି ବେନି କର ମାଗି ଖାଉଥିବ ପଣ୍ଡାଙ୍କ ପଛେ ଗୋଡ଼ାଇ ହେ ।
ଠୁଳ ହୋଇଥିବେ ଯହିଁ ସାଧୁମାନେ ପଡ଼ୁଥିବ ପାଦେ ଯାଇ ହେ
ଠାବ କରୁଥିବ ପତିତପାବନ ଦ୍ୱାରେ ଆସନ ବନାଇ ହେ ।

କର୍ତ୍ତା ଦେଉଥିବ ରଖ ଜଗନ୍ନାଥ ଜଗତ କରତା ମୋତେ ହେ
ଓଡ଼ଶଥିବ କୃଷ୍ଣ ନାମ ଗାୟନକୁ ସେବାରେ ଥିବ ନରତେ ହେ ।

ତମ ପସରକୁ ଭୁଲ ମରୁ ଅଛୁ କାମ କ୍ରୋଧ ମୋହେ ପଡ଼ ହେ
ତମ ନ ମଣ ମୋ ବଷୟରେ ପ୍ରଭୁ ଦୁଃଖରେ ଗଳିଣି ମଢ଼ି ହେ ।

ଆଉ କାଆଗେ କହିବ ଭବଗ୍ରାହୀ ନାହିଁକର ଦୀନବନ୍ଧୁ ହେ
ଆରତ ତାରଣ ଆରତେ ଭାସୁଛି ଉଦ୍ଧର ଏ ଭବ ସିନ୍ଧୁ ହେ ।

ତୁମ୍ଭ ମାନକେ ନାହିଁ ଆନ ଭରସା ତୁମ୍ଭେ ମୋର ପ୍ରାଣନାଥ ହେ
ତରିବ କରୁପେ ଅବଧାନ ହେଉ ନୋହିଲେ ହେଲି ଅନାଥ ହେ ।

ଥାବର କୀଟ ଜଙ୍ଗମ ଆଦି ଯେତେ ଏମାନଙ୍କୁ ଉଦ୍ଧରିଲ ହେ
ଥୋକ ଜୀବ ସିନା ମୁଁ ମୂଢ଼ ଅଟଇ ମୋ ଗୁହାରି ନ ଶୁଣିଲ ହେ ।

ଦୟାକର ପ୍ରଭୁ ଶ୍ରୀପୁରୁଷୋତ୍ତମେ କାୟା ପବିତ୍ର କରିବ ହେ
ଦୁର୍ଜନ ସଙ୍ଗ ଛୁଡ଼ାଣ ମହାପ୍ରଭୁ ସୁଜନ ସଙ୍ଗ ଲଭିବ ହେ ।

ଧାଇଁ ଯାଇ ପୁରୁଷୋତ୍ତମରେ ରହି କ୍ଷେତ୍ରବାସୀ ବୋଲାଇବ ହେ
ଧନ୍ୟ ସେ ମହିମା କେ ଜାଣିପାରିବ ବଦନେ କସ କହିବ ହେ ।

ନିତ ନିତ ଧୂପ ପାଞ୍ଚ ଅବକାଶ ଦର୍ଶନକୁ ପାଉଥିବ ହେ
ନିକଟରେ ଥିବ ଶ୍ରୀନୀଳାଚଳରେ କେବେ ଅନ୍ତର ନୋହିବ ହେ ।

ପତିତ ପାବନ ବାନା ବାନ୍ଧିଅଛ ପତିତ ତାରିବା ପାଇଁ ହେ
ପରମାନନ୍ଦ ଆନନ୍ଦ ହେଉଥିବ ଦେଖି ବାନାକୁ ଅନାଇଁ ହେ ।

ଫେଡ଼ କହିଲି ଯା ପ୍ରଭୁ ନ ଶୁଣିଲେ କେ ଶୁଣିବ ମୋ ଗୁହାରି ହେ
ଫନ୍ଦା କରିଛୁ ନନ୍ଦା କର୍ମା ଦେଉଛ ତୁଟିତେ ଉଦ୍ଧର ହରି ହେ ।

ବଡ଼ ପ୍ରତି ଆଶା କରିଛୁ ପ୍ରଭୁଙ୍କୁ ଆଶ ପୂର୍ଣ୍ଣ କର ବେଗେ ହେ
ବଡ଼ ଦେଉଳର ଦକ୍ଷିଣ ପାରୁଶେ ଥିବ ମହୋଦଧି ଲାଗେ ହେ ।

ଭାଇ ବନ୍ଧୁ ସଖା ସୋଦର ଯେତେକ ନୁହନ୍ତି କେହି ମୋର ହେ
ଭବଗ୍ରାହୀ ନାଥ ଭାବେ ସେବୁଥିବ ତୁମ୍ଭଙ୍କୁ କରି ସୋଦର ହେ ।

ମଣିମା ମଣିମା ଡାକ ଦେଉଥିବ କଳାର ହାଟରେ ଥାଇ ହେ
ମାରୁଥିବେ ମୋତେ ଧରି ବେତ ହାତେ ବୋଲୁଥିବ ହାଇ ହାଇ ହେ ।
ଯିବ ସବୁ ଦୁଃଖ ଚାହିଁ ପଦ୍ମ ମୁଖ ଅକ୍ଷେ ସୁଖ ପାଇବ ହେ
ଜଗବନ୍ଧୁ ଦୀନବନ୍ଧୁ ଆର୍ତ୍ତତ୍ରାଣ ରଖ ବୋଲି ଡାକୁଥିବ ହେ ।
ରଖ ବା ନ ରଖ ମୁଁ ଅନ୍ତ ନରେଖ ଶ୍ରୀ ଛାମୁରେ ଜଣାଉଛି ହେ
ରଖିଛ କେତେ ବିପତ୍ତିରୁ ସଂସାରେ ମୋ ବେଳକୁ ନ ଶୁଣୁଛ ହେ ।
ଲଳିତ କରି ଗାୟନ କରୁଥିବ ଶ୍ରୀ ଗୀତଗୋବିନ୍ଦ ଆଗେ ହେ
ନିଜ ଘୁଙ୍ଗୁର ଝୁମଉ ଗୁଞ୍ଜୁଥିବ ନୃତ୍ୟ କରି କେତେ ବାଗେ ହେ ।
ବାଜୁଥିବ ନାନା ବାଦ୍ୟମାନେ ଜନେ ବୋଲୁଥିବେ ହରି ହରି ହେ
ବ୍ରହ୍ମା ଆଦି ସୁରଗଣେ ବସିଥିବେ ସେ ଶୋଭାକୁ ଧ୍ୟାନ କରି ହେ ।
ଶରଣ ରଖ ବୋଲିଣ ଡାକୁଛନ୍ତି ପଙ୍କଜ ମୁଖକୁ ଚାହିଁ ହେ
ଶୀଘ୍ରେ ତାହାଙ୍କୁ ମୁକ୍ତି ପଦ ଦେଉଛ କୃପା କଟାକ୍ଷେ ଅନାଇ ହେ ।
ଶରଣପଞ୍ଜର ଭୁଜ ଟେକିଅଛ ଶରଣ ରଖିବା ପାଇଁ ହେ
ଶରଣ ରଖ ଯାଚୁଛି ମୁଁ ଉଦ୍ଧର କରୁଣା ନାବ ଲଗାଇ ହେ ।
ସଜଫୁଲ ଆଣି ଗୁନ୍ଥି ଦେଉଥିବ ଜରି କରଡ଼ିଆ ମାଳ ହେ
ସୁନ୍ଦର ଦିଶୁଥିବ କଳା ଅଙ୍ଗକୁ ଲୋଟୁଥିବ ଧଣ୍ଡାମାଳ ହେ ।
ହେଳା କଲେ ପ୍ରଭୁ ଭେଳା ମୋ ବୁଡ଼ିବ କହୁଚି କମଳା ପାଇଁ ହେ
ହରି ହରି ବୋଲି ଜୀବ ମୋର ଯାଉ ତୁମ୍ଭ ଶ୍ରୀ ମୁଖକୁ ଚାହିଁ ହେ ।
ଖିତି ମଣ୍ଡଳରେ ଆହେ ଦୀନବନ୍ଧୁ କୀର୍ତ୍ତି ପତାକା ଉଡ଼ିବ ହେ
ଖୀଣ ହୀନ ଦୀନ ଦାସ ବୃନ୍ଦାବନ ଯେବେ ବାରେକ ତରିବ ହେ ।

—(୦)—

# ଭିକାରୀ

(୧୭ଶ ଶତକ)

କବି, ମଧ୍ୟଯୁଗରେ ଓଡ଼ିଆ ପଦ୍ୟାବଳୀ ସାହିତ୍ୟରେ ଆପଣାର ସ୍ଥାନ ସଂରକ୍ଷଣ କରିପାରିଥିଲେ । ଏହାଙ୍କର ବଂଶ ପରିଚୟ କିମ୍ବା ଅନ୍ୟାନ୍ୟ ପ୍ରସଙ୍ଗ ବିଷୟରେ ଜଣାପଡ଼େ ନାହିଁ । ତାଙ୍କର ସମୁଦାୟ ଲେଖା ମଧ୍ୟ ମିଳୁନାହିଁ । କେବଳ ଖଣ୍ଡିଏ ମାତ୍ର ପଦ୍ୟାବଳୀ ଆମ ଦୃଷ୍ଟିକୁ ଆସିଛି । ସବୁ ଅବଶ୍ୟ ଶ୍ରୀ ଜଗନ୍ନାଥ ସମ୍ପର୍କୀୟ, ତେବେ ଏଥିରୁ ଗୋଟିଏ ଭଜନଧର୍ମୀ ଓ ଶୂନ୍ୟଦର୍ଶନରେ ପରିପୂର୍ଣ୍ଣ । ତାହାକୁ ଜଣାଣ-ସଂଗ୍ରହରେ ସ୍ଥାନସ୍ଥ କରାଯାଇ ନାହିଁ ।

କବି ଭିକାରୀଙ୍କର ରଚନାରୁ ଅନୁଭୂତ ହୁଏ ଯେ, ସେ ଜଣେ ଜଗନ୍ନାଥ-ପ୍ରାଣ ନିଃସ୍ୱ ଭକ୍ତ ଥିଲେ । ଜଗନ୍ନାଥଙ୍କ ବିନା ଆପଣାର ବୋଲି ତାଙ୍କର କେହି ନଥିଲେ । ଉତ୍କଳୀୟ ପରଂପରା ଅନୁକ୍ରମେ ଜ୍ଞାନ-ମିଶ୍ରା ପ୍ରେମ-ଭକ୍ତି ସିଦ୍ଧାନ୍ତକୁ ସେ ଗ୍ରହଣ କରିଥିବା ତାଙ୍କ ଲେଖାରୁ ପ୍ରମାଣିତ ହୁଏ ।



## ୧୩୧

ଦୀନବନ୍ଧୁ ହେ ! ବାରେ ଦେଖ ଜଣାଣ
ଏ ମହା ଦୁଃଖକୁ ମୋର ଶୀଘ୍ର କର ଦହନ । ଘୋଷା ।

ସତ୍ୟ ତ୍ରେତା ଦ୍ୱାପର          କଳିରେ ଅବତାର
ବସିଛ ନୀଳକନ୍ଦର
ହୋଇ ପରା ମଣ୍ଡନ ।୧।

ତୁମ୍ଭ ନାମ ଶୁଣି ହନୁ          ଅଇଲ ଲଙ୍କାଭୁବନୁଁ
ବିଂଶବାହୁ ବିନାଶିଣ
ବିଭୀଷଣ ରାଜନ ।୨।

କୁରୁପତି ସଭାତଳେ          ଦ୍ରୌପଦୀ ଆତଙ୍କ କାଳେ
କୋଟି ବସ୍ତ୍ର ଦେଲ ହେଳେ
ଲଜ୍ଜା ତା ନିବାରଣ ।୩।

ବନସ୍ତେ ଡାକେ ହରିଣୀ          ରଖ ଆହେ ଚନ୍ଦ୍ରପାଣି ।
ସେ ଡାକ କର୍ଣ୍ଣରେ ଶୁଣି
ରଖିଛ ଭଗବାନ ! ।୪।

ଅଗାଧ ଜଳରେ ଗଜ          ଉଦ୍ଧରିଲ ଦେବରାଜ !
କାକ ପଡ଼ି ଚତୁର୍ଭୁଜ
ହେଲଟି ଯେଣ ନାମ ।୫।

ଶ୍ରୀ ଗୁରୁଦେବ ଚରଣେ          ଚିତ୍ତ ରଖୁ ଅନୁକ୍ଷଣେ
ବାଇ ଭିକାରିଆ ଭଣେ
ଦୁଃଖ କର ଦହନ ।୬।



## ୪୩

ନ ଗଲୁ ମନ ! କ୍ଷେତ୍ରସ୍ଥଳକୁ

ଧନ ଦାରସୁତ ଆବୋଉ ବସିଛୁ
କେଣ୍ଟ ନୋହେ ସଙ୍ଗ ଗଲବେଳକୁ ॥ଘୋଷା॥

ତୁଳସୀ ଚଉରା- ଠାରେ ନ ହଜାଣା
ପ୍ରଦକ୍ଷିଣ କର ଯୋଡ଼ କରକୁ
ମଧ୍ୟେ ପଞ୍ଚକୋଶୀ ପ୍ରଭୁଛନ୍ତି ବସି
ସେଠାରୁ ଦେଖ ତୁ ନୀଳଚକ୍ରକୁ
ଧ୍ୱଜା ଖଣ୍ଡକୁ ଚୂଡ଼ା ଆଗକୁ
ଚଉକଛନ୍ତ୍ର[୧] ଅଠର ନଳାକୁ ।୧।

ସେ ଅଠର ନଳା ପଶ୍ଚିମରୁ ଜଳା
ବଳ୍ଲଯା'ନ୍ତେ ପଥପୂର୍ବ ଭାଗକୁ
ଜନକପୁର ବାଲି[୨] ଆପେ ହର ଗୁଲି
ସେ ରେଣୁ ନମିଲେ ବ୍ରହ୍ମା ଶିବଙ୍କୁ
ଧାଆନ୍ତି ତାହାକୁ ଚଉବାହାକୁ
ବଜାଏ ଡ଼ମ୍ବରୁ ଚଢ଼ି ଷଣ୍ଢକୁ ।୨।

ଧନ୍ୟ ବଡ଼ ଦାଣ୍ଡ ସର୍ବ ପାପ ଖଣ୍ଡ
ସକଳ ତୀର୍ଥ ସେବନ୍ତି ତାହାକୁ
ଗୋରୁ ବିପ୍ର ମାରି ଗୁରୁ ପତ୍ନୀ ହରି
ସେଠାବକୁ ଗଲେ ବନ୍ଦେ ପାପକୁ
ଟଳେ ହସ୍ତକୁ ଦେଇ ମସ୍ତକୁ
ଗଡ଼ଧାଲି[୩] ଶୁଅ ବଡ଼ ଦାଣ୍ଡକୁ ।୩।

---

୧. ଚଉକଛନ୍ତ୍ର—ନଗୁଅଳ । ୨. ଜନକପୁର ବାଲି—ନନ୍ଦରାଜାଙ୍କ ଜନ୍ମଧାମ
ଜନକପୁର— ଏଠି ଗୁଣ୍ଡିଚା ପୀଠ, ଗୁଣ୍ଡିଚା କ୍ଷେତ୍ରର ବାଲି ।
୩. ଗଡ଼ଧାଲି—ସାଷ୍ଟାଙ୍ଗ ହୋଇ ।

ଛଟେପୋତି ସାଧୁ    ବୈଷ୍ଣବ ମହନ୍ତ
କରୁଛନ୍ତି ଲୀଳା ଗାଇ ନାମକୁ
କଡ଼ୁଆ ଗଞ୍ଜାଇ    ବଡ଼ା ବଡ଼ା ଖାଇ
ଡ଼ାକୁଛନ୍ତି ସେ ମୁକତି ଧାମକୁ
ଚଢବହାକୁ ଧାନ୍ତି ତାହାଙ୍କୁ
ମିଳୁଛି ଅବଢ଼ା ନେନ୍ତକ ବେଳକୁ ।୪।

ସେ ଅରୁଣ ସ୍ତମ୍ଭ    ମେରୁ ସର ଦମ୍ଭ
ଦେଖି ସିଂହଦ୍ୱାରେ ଗଜସିଂହକୁ
ବାଇଶ ପାବଚ୍ଛ    ଲଗା ଚନ୍ଦ୍ରି ହସ୍ତ
କୈବଲ୍ୟ ପସର ବେଢ଼ ପାଶକୁ
ଗୁହାଁ ଆଗକୁ ବକାକଣାକୁ
ବନ୍ଧି ନେଉଛନ୍ତି ବଡ଼ ଦାଣ୍ଡକୁ ।୫।

ସେଠାବରୁ ଧୀରେ    କଳ୍ପବଟ ମୂଳେ
ଦେଖି ବଟଜୁଟଶାୟୀ ପ୍ରଭୁଙ୍କୁ
ପଦାଙ୍ଗୁଳି ନେଇ    ବଦନରେ ଦେଇ
ହସୁଛନ୍ତି ବୃହିଁମାତା ମୁଖକୁ
ଚହିଁ ଆଗକୁ ଦକ୍ଷଭାଗକୁ
ପାହାଚ ରଖିଛି ଗଜମୁଖକୁ ।୬।

ମୁକ୍ତି ମଣ୍ଡପେ    ବସିଛନ୍ତି ବିପ୍ରେ
ପଢ଼ୁଛନ୍ତି ବେଦ ସ୍ମୃତି ଶାସ୍ତ୍ରକୁ
ସେ ରୋହିଣୀକୁଣ୍ଡ    ସର୍ବ ପାପ ଖଣ୍ଡ
କାକ ପଡ଼ି ହେଲା ଚତୁର୍ଭୁଜକୁ
ଗଲା ସ୍ୱର୍ଗକୁ ଯାଅ ଆଗକୁ
ବିମଳା ଦେଖି ପଶ୍ଚିମ ଭାଗକୁ ।୭।

ସେଠାରେ ସ୍ୱରୂପେ            କୋପେ ନାରାୟଣ
ଚନ୍ତା କର ବାରେ ହୃଦେ ତାହାଙ୍କୁ
ମାତା ସରସ୍ୱତୀ            ତହିଁ ଅଛନ୍ତି
ନମସ୍କାର କର ତାଙ୍କ ପଦକୁ
ତହିଁ ଆଗକୁ ଉତ୍ତର ଦିଗକୁ
ମାତା ମହାଲକ୍ଷ୍ମୀ ଦେଖ ତାହାଙ୍କୁ ।୮।

ସେଠାବରୁ ଏକ            କୁଣ୍ଡ ଯାଇ ଦେଖ
ତହିଁ ନେଇ କ୍ଷେପ ବୀଜ ଗର୍ଭକୁ
ସର ପ୍ରାପ୍ତ ପ୍ରଭୁ            ଫିଙ୍ଗି ଦେଉଅଛ
ଏ ନନ୍ଦା ହୋଇବ ଆଜ କାହାକୁ
ଚଢ଼ବାହାକୁ ଚୂଡ଼ା ଉର୍ଦ୍ଧ୍ୱକୁ
ଉଡ଼ୁଛି ପତାକା ତିନ ପୁରକୁ ।୯।

ଜଗ ମୋହନରେ            ପଶି ଯାଅ ଥରେ
ଆଲିଙ୍ଗନ କର ପକ୍ଷୀରାଜକୁ
ରତ୍ନ ବେଦୀ ପରେ            ଗୃହିଁ ଦିଅ ଥରେ
ଦେଖ କଳାଧନ ମୁଖ ଶୋଭକୁ
ପାଦ ତଳକୁ ଲଗା ଶିରକୁ
ପରକ୍ରମା କର ରତ୍ନ ବେଦୀକୁ ।୧୦।

ଆଗେ ରତ୍ନ ଦୀପ            ଜଳେ ଦପ ଦପ
ଥପ୍ପ ହୋଇ ଲପ୍ପ କର ତାହାକୁ
କହଇ ଭିକାରୀ            ସାହା କେହି ନାହିଁ
ଦଣ୍ଡେ ନ ଛାଡ଼ଇ ରତ୍ନ ଧନକୁ
ଧର ନାମକୁ ଡ଼ାକେ ତୁମ୍ଭକୁ
ଅନ୍ତେ ନୋହୁ ଗତି ଯମପୁରକୁ ।୧୧।

# ସାରିଆ ଭିକ

( ୧୭ଶ ଶତାବ୍ଦୀ )

ପଦ୍ୟାବଳୀର କବି ରୂପେ, ସାରିଆ ଭିକ ଓଡ଼ିଶାର ପୁରପଲ୍ଲୀରେ ସୁପରିଚିତ । 'ଥକାମନ ଗୁଲଫିବା' ପଦ୍ୟାବଳୀ ତାଙ୍କୁ ଏତେ ଲୋକପ୍ରିୟତାର ଅଧିକାରୀ କରି ପାରିଛି । କବିଙ୍କର ବଂଶ/କୁଳ ପରିଚୟ ଇତ୍ୟାଦି ମିଳୁନାହିଁ । ହୁଏତ ଅଧିକ କିଛି ଲେଖା ଆବିଷ୍କୃତ ହେଲେ, କବିଙ୍କୁ ସଠିକ ଭାବେ ଜାଣିବା ସମ୍ଭବ ହେବ ।

ତେବେ ସଂଗୀତ ରଚନାନ୍ତି ଭଜନ ପରି ଜଣାଯାଉଥିଲେ ମଧ୍ୟ ଏଥିରେ ଶ୍ରୀକ୍ଷେତ୍ର ଓ ଶ୍ରୀଜଗନ୍ନାଥଙ୍କ ଦର୍ଶନ ଅଭିଳାଷର ସ୍ପଷ୍ଟ ଅଭିବ୍ୟକ୍ତି ଥିବାରୁ ଜଣାଣ ଶ୍ରେଣୀରେ ଅନ୍ତର୍ଭୁକ୍ତ କରାଯାଇଛି ।

## ୧୩୩

ଥକା ମନ ଗୁଲ ଯିବା
ଚକାନୟନ ଦେଖିବା
ଶଙ୍ଖନାଭି ମଣ୍ଡଳରେ ବେନି ନେତ୍ର ପଖାଳିବା ॥ ଘୋଷା ॥

ବାଟରେ ବାଟ ମଙ୍ଗଳା
ଦେଖିବା ଅଠର ନଳା
ପାଞ୍ଚ ମନ ଏକ ମେଳା ନରେନ୍ଦ୍ରେ ସ୍ନାନ କରିବା ।୧।
ଚହଞ୍ଚିବା ବଡ ଦାଣ୍ଡେ
ସେନରଣ୍ଡ ପାଇବା ଭୁଣ୍ଡେ
ନ୍ତଳା ଚକେ ରହି ଦଣ୍ଡେ ସାଧୁଙ୍କ ସେବା କରିବା ।୨।

ସିଂହଦ୍ୱାରେ ଭିଡ଼ାଭିଡ଼
ବାଜୁଅଛି ବେତ ବାଡ଼ି
ଠେଲି ଦେଇ ଯିବା ମାଡ଼ି ଧକ୍କା ବାଜିଲେ ମରିବା ।୩।

ବାଇଶି ପାବଚ୍ଛେ ଢକା
ହେଉଛି କୈବଲ୍ୟ ରେଖା
ହାଣ୍ଡିକ ପଡ଼େ ସୀଝିକା ମନରଙ୍କା ଛଡ଼ାଇବା ।୪।

ଗରୁଡ଼ ପଛରେ ଦେଖ
ଦିଶୁଛି କଳା ଶ୍ରୀମୁଖ
କହଇ ମାଣିଆ ଭକ୍ତ ବଳରାମଙ୍କୁ କହିବା ।୫।



# ଗଣେଶ ପଟ୍ଟନାୟକ

( ୧୭ଶ ଶତାବ୍ଦୀ )

ଏହାଙ୍କର ପୂର୍ଣ୍ଣାଙ୍ଗ ପରିଚୟ ଦୁର୍ଲ୍ଲଭ । କେବଳ
ଏଇ ଜଣାଣଟି ହିଁ ତାଙ୍କର ପରିଚୟ ପତ୍ର ।

ବଛନ ଚରଣ ପଟ୍ଟନାୟକ, ଏନ୍ତ କବିଙ୍କୁ ସମ୍ପ୍ରଦା
ଶତକର ବୋଲି ଚିହ୍ନିତ କରିଥାନ୍ତି । କୁଳପରିଚୟ
କମ୍ବା ଅନ୍ୟାନ୍ୟ ପ୍ରସଙ୍ଗ ସମ୍ପୂର୍ଣ୍ଣ ଅଜ୍ଞାତ ।



## ୧୩୪

ମୋତେ ଏ ସଙ୍କଟୁ କର ପରିତ୍ରାଣ
ହେ ନାରାୟଣ ! । ଘୋଷା ।

ଘୋର ମରଧି ମଟେର — ଯାହାକଲି ଦ୍ୱାରଦରେ
ତା ସ୍ମଣି ଗୁଣି ହୃଦରେ — ପ୍ରଭୁ ଅଶା ଶ୍ରୀପଦରେ
ରଖିଅଛୁ ତମ୍ଭାଳ ଶରଣ ହେ ।୧।

ଯେତେଥ୍ରେ କୃପା ସୁଦାମାରେ — ବଡ଼ ପ୍ରଶଂସା ତା ମା'ରେ ୧
ଧୁଆଇ ପଦ ରମାରେ * — ମଣ୍ଡି ଦେଲ ମନ୍ତ୍ରମାରେ
ଅଣିମାଦ ସୁଖ ଦେଲ ପୁଣ ହେ ।୨।

ନନ୍ଦ୍ରୁର ହେଲେ ବଳାଇ — କଳ୍ପବ କେତେ ଛଳାଇ
ଅନାଇଁ ଦଅ ହେଳାଇ — ଯାଉ ମୋ ଦୁଃଖ ପଳାଇ
କୃପାବଧି ଅଟ ତ ଆପଣ ହେ ।୩।

ଭକ୍ତ ଶ୍ରୀ ଗଣେଶ ପଟ୍ଟ- — ନାୟକ ମୋ ସାହାପଟ
ନୋହିଲେ ପାଣ୍ଡବପଟ — ସରିଗଲି ମୁଁ ନପଟ
ମୋ ଡାକକୁ ବାରେ ଶ୍ରୁତି ଆଣ ହେ ।୪।



---

ପାଠାନ୍ତର—୧. ତା ଠା'ରେ— ବଡ ପ୍ରଶଂସା ତା ମା'ରେ,—ଅର୍ଥାତ୍—ମା'ରେ ବା ଜଗଜ୍ଜନନୀ ମହାଲକ୍ଷ୍ମୀଙ୍କ ଆଗରେ ଶ୍ରୀକୃଷ୍ଣ, ସଖା ସୁଦାମାର ପ୍ରଶଂସା ଖୁବ୍ କରିଥିଲେ ।

* ଧୁଆଇ ପଦ ରମାରେ —ମହାଲକ୍ଷ୍ମୀ (ରୁକ୍ମିଣୀ)ଙ୍କ ଦ୍ୱାରା ଦରିଦ୍ର ସଖା ସୁଦାମାର ପଦ ଶ୍ରୀକୃଷ୍ଣ ଧୁଆଇ ଦେଇଥିଲେ ।

# ବୈଦ୍ୟନାଥ ଦ୍ୱିଜ

## ( ୧୭ଶ ଶତାବ୍ଦୀ )

କବିଙ୍କ ସମ୍ପର୍କରେ ବିଶେଷ ତଥ୍ୟ ମିଳେ ନାହିଁ । କିନ୍ତୁ ଏହି ଜଣାଣଟି ଲୋକ ମୁଖରେ ଅଦ୍ୟାବଧି ଉଚ୍ଚାରିତ ହେଉଥିବା ଲକ୍ଷିତ ହୁଏ । କବିଙ୍କୁ ସପ୍ତଦଶ ଶତାବ୍ଦୀର ଲୋକ ବୋଲି ବିଚ୍ଛନ୍ଦ ପଟ୍ଟନାୟକ ଚିହ୍ନିତ କରିଥାନ୍ତି । ଜଣାଯାଏ, କବି ଥିଲେ କୃଷ୍ଣଭକ୍ତ, ଜଗନ୍ନାଥ-ସ୍ୱରୂପରେ ସେ କୃଷ୍ଣଙ୍କୁ ଆପଣାର ଦୈନ୍ୟ ଗୁହାରି କରିଛନ୍ତି ।

## ୧୩୫

ଜୟ ଜୟ ଜଗନ୍ନାଥ ମହାବାହୁ
ଜଗବନ୍ଧୁ ବୋଲି ମୋ ଜୀବନ ଯାଉ । ଘୋଷା ।

ଆରତ ତାରଣ        ଶରଣ ରକ୍ଷଣ
କାରଣେ ବାନା ଉଡ଼ାଉ
ମୋର ଯଦିଛେ ଯାଉ ପ୍ରାଣ        କେବେ ନ ମିଳୁ ଦୂଷଣ $
ଭବଭୟ ବାନାକୁ ତୋ ନିନ୍ଦା ନୋହୁ ।୧।

ଘରଚିଆ ପକ୍ଷୀ        ଘଣ୍ଟ ଡ଼ାକି ରଖି
ଜୀବଦାନ ଦେଲ ଯେଉ
ମୋ ସଙ୍କଟ ଟାଠୁଁ ବଳି        ରଖ ଆହେ ବନମାଳି !
ତୋତେ ଭଲି ହେବ କି ମୁଁ ମନେ ଆଉ । ୨ ।

ତୃଷାର୍ତ୍ତ ଯେ ଜନ        ହାରେ କି ଜୀବନ
ଚାତକ୍ କେ ଥାଉ ଥାଉ
ଶିଖର ପୃଷ୍ଠରେ ଯେବେ        କୁଳିଶ * ବରଷା ତେବେ
ମୋତେ ମାର କାଳେ କାଳେ ଯଶ ଥାଉ । ୩ ।

ଆହେ ପଦ୍ମମୁଖ        ଦେଲ ଯେତେ ଦୁଃଖ
ଏହା କାହା ଦେହ ସହୁ
ଦ୍ୱିଜ ବୈଦ୍ୟନାଥ ବୋଲେ        ଏ କାଳରେ ନ ରଖିଲେ
ପାପ ଶରୀରକୁ ମୋର ଅଗ୍ନି ଖାଉ । ୪ ।

---

$ ଦୂଷଣ — ଅପମାନ ।
* କୁଳିଶ — ବଜ୍ର ।

# ବଳଭଦ୍ର ଭଞ୍ଜ

(୧୭୨୪—୧୭୯୨)

କବି, କେନ୍ଦୁଝରର ରାଜା ଥିଲେ । ସେ ୧୭୫୧ ଖ୍ରୀଷ୍ଟାବ୍ଦରେ କେନ୍ଦୁଝର ସିଂହାସନ ଆରୋହଣ କରିଥିଲେ । ବ୍ରଜନାଥ ବଡଜେନା, ଏହାଙ୍କ ନାମରେ ସୁରଚିତ 'ଅମ୍ବିକା ବିଳାସ' କାବ୍ୟ ଭଣିତା କରିଥିଲେ । କବିଙ୍କ ସମ୍ପର୍କରେ କେତେକ ବିବରଣୀ କବି ମାନକଣ୍ଠ ବିରଚିତ ସଂସ୍କୃତ କାବ୍ୟ ଭଞ୍ଜ ମହୋଦୟମ୍'ରୁ ମିଳିଥାଏ । ଏହି ସଂସ୍କୃତ କାବ୍ୟଟି ପଣ୍ଡିତ ବାନାମ୍ବର ଆଚାର୍ଯ୍ୟଙ୍କ ଦ୍ୱାରା ସମ୍ପାଦିତ ହୋଇ ୧୯୪୭ ଖ୍ରୀଷ୍ଟାବ୍ଦରେ ପ୍ରକାଶ ପାଇଛି ।

ବଳଭଦ୍ର ଭଞ୍ଜ, ଚଉପଦୀ ଓ ଭକ୍ତି ସଂଗୀତର ସ୍ରଷ୍ଟା ରୂପେ ପରିଚିତ । ଏତଦ୍‌ଭିନ୍ନ 'ଜଳଧର ତରଙ୍ଗିଣୀ' ନାମକ ଏକ ରଚନା ତାଙ୍କର କୃତି ରୂପେ ଚିହ୍ନିତ ହୋଇଥାଏ ।



## ୧୩୭

ଦୀନବନ୍ଧୁ ! କୃପାସିନ୍ଧୁ ! ମୋ ବନ୍ଧୁ କେ ବୋଲାଇବ ?
(ଯେବେ) କୃପାରେ କୃପଣ ହେବ ।ଘୋଷା ।

ବିପଦ ନାଶନ ବାନା ବିପଦକୁ ବଜ୍ରସେହ୍ଲା $
ଉଡ଼ାଉଛ ହେ ଇନ୍ଦିରାଧବ *
ବିପଦରେ କେ କାହିଁକି ଶରଣ ଯିବ
ଜୀବଧର ନ ଶୁଣିଲେ କର୍ମକୁ ଆଦରିବ ।୧।

ଥାଉ ଥାଉ ଗଙ୍ଗା କୂଳେ ତୃଷାର୍ତ୍ତ କି ତୃଷାବଳେ
ପଶୁ ବିନା ପ୍ରାଣ ହରାଇବ
ତୁମ୍ଭେ ବୁଝ ନିନ୍ଦା ଲାଜ କାହାକୁ ହେବ !
କଳ୍ପବୃକ୍ଷ ହୋଇ ଯେବେ କର୍ମକୁ ନ ଫଳିବ ।୨।

ହେ ପ୍ରଭୁ କରୁଣା ରାଶି ! ଭବଜଳେ ଗଲା ଭାସି
ପଛେ ଥାଉ ନାବ କି କରିବ
ଚକ୍ରଧର ! ଚକ୍ର କର୍ପା କରେ ବହିବ
ବନ୍ଦ ହେଲା ଧାର ବୋଲି ଜଗତେ ବାଜିଣ ଯିବ ।୩।

ଶୁଣ ବା ନଶୁଣ ବାରେ ଜଣାଉଛି ଶ୍ରୀଛାମୁରେ
କଷ୍ଟତରେ ଦୟା ତ ହୋଇବ
ବୋଲେ ବଳଭଦ୍ର ଯା ବନ୍ଧୁର ଯାଦବ !
ଶିରୀଷ ଫୁଲରେ ଯେବେ କୁଳିଶ ବରଷା ହେବ ।୪।



---

$ ବଜ୍ରସେହ୍ଲା — କବଚ (ବଜ୍ର ଠାରୁ ତ୍ରାଣ)

* ଇନ୍ଦିରାଧବ—ଲକ୍ଷ୍ମୀଧବ—ବିଷ୍ଣୁ ।

## ୧୩୭

ଜଗବନ୍ଧୁ !

ଜଗତରେ ନାଥ ମିଚ୍ଛେ ବୋଲାଉଛ !

ହେଲ ଯାହା ନେଲ ତାହା — ଆହେ ପ୍ରଭୁ ତଉବାହା

ଏଥକୁ ଦାତା ପଟରେ ପତାକା ଯା' ଉଡ଼ାଉଛ । ପଦ ।

ପୂର୍ବରେ ବାମନ ହୋଇ — ବଳୀଧନ ଦାନ ନେଇ

ମିତ୍ର ସୁଦାମାକୁ ଦେଇ ପରଶଂସା ପାଇଅଛ ।

ଶୁକ୍ର ମନ୍ତ୍ରୀ ନେତ୍ରେ କୁଶ — ମାରିବାକୁ ଲଭ ଦୋଷ

ଧୂଳି ଖେଳେ ପୀତବାସ ଅନ୍ଧେ ଚକ୍ଷୁ ଦେଇଅଛ ।୧।

ଗୋପୀଙ୍କ ବସ୍ତ୍ର ଗୋକୁଳେ — ଚୋରି କଲ ଅବହେଳେ

ଦ୍ରୌପଦୀ ଚନ୍ଦ୍ରାନ୍ନ ବେଳେ କୋଟି ବସ୍ତ୍ର ଯୋଗାଇଛ

କଂସ କୁବଳୟା କରୀ — ଥିବାରୁ ତାକୁ ସଂହାରି

ପୁଣି ଜଳେ ଗ୍ରାହା ମାରି ଗଜେ ପ୍ରାଣ ଦେଇଅଛ ।୨।

ମାଳ ମନ୍ଥରର ତଟ — ଶୁଦ୍ଧ ଯେ କଳ୍ପବଟ

ତା ମୂଳେ ହୋଇ ପ୍ରକଟ ଡାକ ଡାକ ନ ଶୁଣୁଛ

ତୁମ୍ଭ ହୃଦୟ କଠିନ — କମଠ ପୃଷ୍ଠରୁ ଜାଣି

ବଳଭଦ୍ରକୁ କଷଣ ଦେଇ ଭୁଜ ଟେକିଅଛ ।୩।



# ସାଧୁ

(୧୭ଶ ଶତାବ୍ଦୀ ?)

କବି-ଜୀବନୀ ସମ୍ପର୍କରେ କୌଣସି ତଥ୍ୟ ମିଳେନାହିଁ । ଉତ୍କଳୀୟ ଜନପଦର ଜଣେ ପଦ୍ୟାବଳୀ ରଚୟିତା ହୋଇଥିବେ ସେ ! କାରଣ ଏହାଙ୍କର ଅନ୍ୟ କୌଣସି କୃତି ସହିତ ଓଡ଼ିଶାର ବିଦଗ୍ଧ ପାଠକେ ପରିଚିତ ନୁହଁନ୍ତି । ଏହି ଜଣାଣଟି ଜଗବନ୍ଧୁ ଜଗନ୍ନାଥଙ୍କୁ ଲକ୍ଷିତ । ମାତ୍ର ସତରଟି ପଦରେ ଏହା ଚଉତିଶା ଶୈଳୀରେ ଲିଖିତ ହୋଇଛି । ଆଙ୍ଗିକ ଦୃଷ୍ଟିରୁ ଏଥିରେ ସ୍ୱତନ୍ତ୍ରତା ବିଦ୍ୟମାନ । ଏହା ଓଡ଼ିଶାର ପୁରପଲ୍ଲୀରେ ଖୁବ୍ ଜଣା ଶୁଣା ଏକ ଜଣାଣ ।

କବି ପରିଚୟ ଅଜ୍ଞାତ ହେଲେ ମଧ୍ୟ ଲେଖାଟିରୁ ମନେହୁଏ ସେ ଜଗନ୍ନାଥ-ପ୍ରାଣ ଭକ୍ତ ଥିଲେ ଏବଂ ପଞ୍ଚସଖାଙ୍କର ପରବର୍ତ୍ତୀ ଯୁଗରେ ନୀଳାଚଳ କ୍ଷେତ୍ରରେ ଆବିର୍ଭୂତ ହୋଇଥିଲେ ।



## ୧୩୮

କରମ ବାମ ମୋର ଆହେ କରୁଣାକର !
କହୁଛି ଅନେକ ପ୍ରକାର
କ୍ଷୀରାର୍ଣ୍ଣବରେ ଘର କ୍ଷିତି ଭାର ଉଦ୍ଧାର
ଖଗେଶ୍ୱର ନାମ ତୁମ୍ଭର
ହେ ଜଗବନ୍ଧୁ ।୧।

ଗଜକୁ ଯେ ଉଦ୍ଧାର ଗ୍ରାହକୁ କର ପାର
ଗରୁଡ଼ ପୃଷ୍ଠରେ ବିହାର
ଘୋର ବିପତ୍ତି ହାର ଘେନ ମନ୍ଦର ଧର
ଘଡ଼ିକେ ଇନ୍ଦ୍ର ପଦ ଚୂର
ହେ ଜଗବନ୍ଧୁ ।୨।

ଉଦ୍ଧାର ହେବା ପାଇଁ ଆଶା ତ୍ରୈଲୋକ୍ୟ ସାଇଁ
ଆଶା ମୋ ପୂର୍ଣ୍ଣ କଲ ନାହିଁ
ଚନ୍ତ ଦ୍ରୌପଦୀ ସତୀ ଚନ୍ତାରୁ ହେଲେ ମୁକ୍ତ
ଚୁହିଁଥିଲେ ଲକ୍ଷେ ନୃପତି
ହେ ଜଗବନ୍ଧୁ ।୩।

ଛପନ କୋଟି ଶାଢ଼ୀ ଛପ୍ପା ମାଦ୍ଧା ସଜାଡ଼
ଛନ୍ନ ଦୁଃଶା କ ପାରେ କାଢ଼ି
ଯାଏ ଲଙ୍କାରେ ଫେର ଯନ୍ତା ରଥୀ ଶ୍ରୀହରି
ଜଗତେ କଲ କେତେ ପାର
ହେ ଜଗବନ୍ଧୁ ।୪।

ଝୁରେ କପୋଣ୍ଡ ପରି ଝୁରି ଝୁରି ସୁମନ୍ଦ
ଝିମିଟେ ନ ଶୁଣ ଗୁହାରି
ନରେଖ ପ୍ରାଣୀ ମୁହିଁ ନାହିଁ ସାହା ମୋ କେହି
ନକଲ ଭବୁ ମୋତେ ହାବି
ହେ ଜଗବନ୍ଧୁ ।୫।

ଟାଣ ଧାଙ୍ଗ ଶ୍ରୀଧର ଟଳାଅ ମେରୁବର
ଟିକାଏ ନ ଦିଅ ଉତ୍ତର

ଠାବ ପାଇକ ନାହିଁ      ଠାକୁର ଲକ୍ଷ୍ମୀପାଇଁ

ଠେକେ ମୁଁ ଜଣାଣ କରଇ

ହେ ଜଗବନ୍ଧୁ ।୬।

ଡାକନ୍ତେ ବେଦବର      ଡାକ ଶୁଣି କର୍ଣ୍ଣର

ଡେଇଁ ତ ପଡ଼ିଲ ଜଳର

ଢଳ ମଚ୍ଛ ଆକାର      ଢାଳେ ଅସୁର ମାର

ଢାଳେ ତୋଷିଲ ବେଦବର

ହେ ଜଗବନ୍ଧୁ ।୭।

ଅନନ୍ତ ଯା ନାମନ୍ତ      ବେଦେ ନ ପାନ୍ତି ଅନ୍ତ

ଅରକ୍ଷ ଜନକୁ ତାର ତ

ତେଣୁ ଭରସା ପାଇ      ତରିବ ବୋଲି ମୁହିଁ

ତଲେହେଁ ଦୟା କଲ ନାହିଁ

ହେ ଜଗବନ୍ଧୁ ।୮।

ଥିର ଜଳରେ ମୁହିଁ      ଥକଚେ ଅଛି ରହି

ଥୟ ମୋ ବୁଦ୍ଧି ହଉ ନାହିଁ

ଦାତା କର୍ଣ୍ଣ ଦୁଆର      ଦାନ ନେଲ ଶ୍ରୀଧର

ଦେଲ ପୃଷ୍ଠକୁ ମାରି ତାର

ହେ ଜଗବନ୍ଧୁ ।୯।

ଧରି ବାମନ ରୂପ      ଧୀରେ ବଳି କ ରୂପ

ଧାପ୍ତି ରହିଲେ କଲ୍ପ କଲ୍ପ

ନୃସିଂହ ରୂପ ଧରି      ନଖେ ହିରଣ୍ୟ ଚିରି

ନଦାନ ଉପତ୍ରିରୁ ତାରି

ହେ ଜଗବନ୍ଧୁ ।୧୦।

ଗ୍ରହରାଜ ରଖିଲ      ପ୍ରଭୁ ସଦର ହେଲ

ପାପୀ ହିରଣ୍ୟେ ସ୍ୱର୍ଗ ନେଲ

ଫାନ୍ଦୁ ଯେ ଅଛ ମୋତେ      ଫନ୍ଦା ଚରଣୋତ୍ତେ

ଫାନ୍ଦୁ ମୁଁ ତରିବ କେମନ୍ତେ

ହେ ଜଗବନ୍ଧୁ ।୧୧।

ବାମ କରମ ଯୁଗ      ବନ୍ଧୁ ଦେଲ କଷ୍ଟ

ବନ୍ଧୁ ତ କରିଛ ଘଟଣ

ଭାଙ୍ଗିଲ ଲଙ୍କାପୁର ଭ୍ରାନ୍ତ ଯେ ଦେବଙ୍କର

ଭୟରୁ କରିଲ ନିବାର

ହେ ଜଗବନ୍ଧୁ ।୧୨।

ମାରିଲ ରାବଣ ବଂଶ ମହୀରୁ ଗଲା ତ୍ରାସ

ମୋତେ ତ କରିଲ ନିରାଶ

ଜାଣ ତ ମହୀ ଅର୍ଥ ଯା ନାମ ଲକ୍ଷ୍ମୀକାନ୍ତ

ଯଶୋଦାଙ୍କର ହେଲ ସୁତ

ହେ ଜଗବନ୍ଧୁ ।୧୩।

ରହିଲ ଗୋପପୁର ରସିକ ଦାମୋଦର

ରସେ ମୋହିଲ ନାରୀନର

ଲବଲବଣୀ ମୂର୍ତ୍ତି ଲକ୍ଷ ଲକ୍ଷ ଯୁବତୀ

ଲୋଭେ କରିଲେ ପ୍ରାଣପତି

ହେ ଜଗବନ୍ଧୁ ।୧୪।

ବୃନ୍ଦାବନରେ ବାସ ବାମାଙ୍କୁ ଦେଲ ବଶ

ବାଲ୍ୟ କାଳରେ କଲ ରାସ

ସାରଙ୍ଗ ଧାରୀ ହରି ସଂସାରୁ କର ପାରି

ଶୋକେ ମୁଁ ଯାଉଅଛି ସରି

ହେ ଜଗବନ୍ଧୁ ।୧୫।

ଶୋକ ମୋହେ ପଡ଼ିଣି ସରି ଯାଉଛି ପୁଣି

ଶ୍ରୀହରି ତୁମ୍ଭେ ନ ଭଜିଣି

ଶିବ ବ୍ରହ୍ମା ଆଦିତ୍ୟ ସେବା କରନ୍ତି ନିତ୍ୟ

ସିଦ୍ଧ ସେ ହୋଇବା ନିମନ୍ତ

ହେ ଜଗବନ୍ଧୁ ।୧୬।

ହୃଦୟେ ମୋ ବିହର ହୃଷୀକେଶ ତ ପାରି

ହୀନ ମୋ କରମକୁ ଦୂର

କ୍ଷେମେ ସାଧୁ ଭଣଇ କ୍ଷମା ନିଧିକ ଧ୍ୟାୟି

କ୍ଷମା କରିବେ ଭାବଗ୍ରାହୀ

ହେ ଜଗବନ୍ଧୁ ।୧୭।



# ବ୍ରଜନାଥ ବଡ଼ଜେନା

( ୧୭୩୦—୮୦୦ )

କବିଙ୍କର କୌଳିକ ନାମ ହେଉଛି, ବ୍ରଜନାଥ ପଟ୍ଟନାୟକ । 'ବଡ଼ଜେନା' ଉପାଧି ରାଜଦତ୍ତ— 'ବଡ଼ଜେନା ପଦ ମୋହର ରାଜଦତ୍ତ' ବୋଲି କବି ନିଜେ 'କେଳି କଳାନିଧି' କାବ୍ୟରେ ସ୍ୱୀକାର କରିଛନ୍ତି । ଏହାଙ୍କର ପିତାଙ୍କ ନାମ ବାଳୁଙ୍କେଶ୍ୱର ପଟ୍ଟନାୟକ । ଏମାନେ ଚାରି ଭାଇ—ଗୋପୀନାଥ, ଜଗନ୍ନାଥ, ବ୍ରଜନାଥ, ଲୋକନାଥ, ସମସ୍ତେ କବି କିନ୍ତୁ ବ୍ରଜନାଥ ବିଶେଷ ଲୋକପ୍ରିୟତା ଅର୍ଜନ କରିଥିଲେ । ଏମାନେ ହେଉଛନ୍ତି ଜଗନ୍ନାଥ-ପ୍ରାଣ ଭକ୍ତ ରଘୁ ଅରକ୍ଷିତଙ୍କର ବଂଶଧର-ଶିଷ୍ଟ କରଣ କୁଳରେ ଏମାନଙ୍କର ଜନ୍ମ ।

ବ୍ରଜନାଥ ଏବଂ ତାଙ୍କର ଭାଇମାନେ ଢେଙ୍କାନାଳ ମୁଲକର ବିଭିନ୍ନ ଗ୍ରାମରେ ବାସ କରୁଥିଲେ । ବଡ଼ଭାଇ ଗୋପୀନାଥ ଢେଙ୍କାନାଳ ଗଡ଼ରେ, ମଝିଆ ଭାଇ ଜଗନ୍ନାଥ କବିଭୂଷଣ ମଧୁକପାଳ ଗାଁରେ, ବ୍ରଜନାଥ କାବେରୀ ଗ୍ରାମରେ ଏବଂ ସାନ ଭାଇ ଲୋକନାଥ ରାଜଚରା, କମଗରା ଗାଁରେ ବାସ କରୁଥିଲେ । ଶ୍ରୀକ୍ଷେତ୍ର ପ୍ରକୃତରେ ଏମାନଙ୍କ ପୂର୍ବପୁରୁଷଙ୍କର ପୂର୍ବାଶ୍ରମ ଥିଲା ।

କବି ପିତାଙ୍କ ସହିତ ଢେଙ୍କାନାଳ ଗଡ଼ ମୁକ୍ତା-ଦେଈପୁର ଶାସନ ନିକଟରେ ବାସ କରୁଥିଲା ବେଳେ, ତାଙ୍କର ବିଦ୍ୟା ଶିକ୍ଷା ହୋଇଥିଲା । ସେ ସଂସ୍କୃତ ସାହିତ୍ୟ ଓ ପ୍ରାଚୀନ ଓଡ଼ିଆ କାବ୍ୟ-କବିତା ଅଧ୍ୟୟନ କରିଥିଲେ ।

କାବ୍ୟ-ସାଧନା ବଳରେ ବ୍ରଜନାଥ, ସମସାମୟିକ ଢେଙ୍କାନାଳରାଜା ତ୍ରିଲୋଚନମହେନ୍ଦ୍ର ବାହାଦୂରଙ୍କର କୃପା-ଦୃଷ୍ଟି ଲାଭ କରିଥିଲେ । ମରହଟ୍ଟାମାନଙ୍କର ଢେଙ୍କାନାଳ ଗଡ଼ ଆକ୍ରମଣ ଘଟଣା ଅବଲମ୍ବନରେ କବି 'ସମର ତରଙ୍ଗ' କାବ୍ୟ ରଚନା କରିଥିଲେ; ଏଥିରେ ରାଜା ମହେନ୍ଦ୍ର ବାହାଦୂର ମୁଖ୍ୟ ନାୟକ ରୂପେ ବର୍ଣ୍ଣିତ ।

କବି ବଡଜେନା, ଉପେନ୍ଦ୍ର ଭଞ୍ଜଙ୍କର କାବ୍ୟରୀତି ଅନୁସରଣରେ ଅମ୍ବିକା ବିଳାସ, କେଳିକଳାନିଧି କାବ୍ୟ ରଚନା କରିଥିଲେ । ଅମ୍ବିକା ବିଳାସ, କବିଙ୍କର ଯୌବନ କାଳର ରଚନା ଏବଂ ଏହା କେନ୍ଦୁଝର ଗଡ ରାଜାଙ୍କ ନାମରେ ଭଣିତ । ଏତଦ୍‌ଭିନ୍ନ କବି ବଡଜେନା, ବିଚକ୍ଷଣୋ, ବିଦେଶାନୁଚିନ୍ତା, ଦଶପୋଇ, ଗୋପୀ ବିଳାସ, ରାଜନକୁ ଛନ୍ଦୋକ୍ତି, ରାଜସଭା ପ୍ରଭୃତି କାବ୍ୟ-କବିତାର ସ୍ରଷ୍ଟା ଭାବେ ସମ୍ମାନିତ । 'ଚତୁର ବିନୋଦ କଥା' ହେଉଛି ବଡଜେନାଙ୍କର ଏକ ଅନବଦ୍ୟ କୃତି । ଓଡ଼ିଆ ଗଦ୍ୟ ସାହିତ୍ୟକୁ ଏହାର ଅବଦାନ ଅତ୍ୟନ୍ତ ମୂଲ୍ୟବାନ । 'ଗୁଣ୍ଡିଚା ବିଜେ' ନାମକ ଏକ ହିନ୍ଦୀ-କବିତା ମଧ୍ୟ ବଡ଼ଜେନାଙ୍କର ସ୍ୱଲିଖିତ; ଏହା ଶ୍ରୀଜଗନ୍ନାଥଙ୍କର ଗୁଣ୍ଡିଚା ଯାତ୍ରା ପ୍ରସଙ୍ଗ ନେଇ ରଚିତ ।

କବି, ଜୀବିତାବସ୍ଥାରେ ରାଜ-ପୃଷ୍ଠପୋଷକତା ପାଇଥିଲେ ମଧ୍ୟ, ବିଭିନ୍ନ ସମସ୍ୟା ହେତୁ, ବହୁ କଷଣ ଓ ତାଡ଼ନାର ଶିକାର ହୋଇଥିଲେ । 'ରାଜନଙ୍କୁ ଛଳୋକ୍ତି' ତାହାର ଏକ ନିଦର୍ଶନ । କୁହାଯାଏ ଯେ ପୁରୀ ଗଜପତି ଦିବ୍ୟସିଂହ ଦେବ ତାଙ୍କୁ ବଡ଼ଜେନା ଉପାଧି ପ୍ରଦାନ କରିଥିଲେ । ବସ୍ତୁତଃ ବଡଜେନା ହେଉଛନ୍ତି ଜଣେ ନିର୍ମଳ-କବି, ଭକ୍ତର ଗୌରବ ଅପେକ୍ଷା କବିର ଗୌରବ ଲାଗି ସେ ଆଜି ସମସ୍ତଙ୍କ ନିକଟରେ ସ୍ମରଣୀୟ ହୋଇ ରହିଛନ୍ତି ।



## ୧୩୯

ଦୀନଜନ ବନ୍ଧୁ ଆରତ ତ୍ରାଣ          ଦଶ ଗୁଣ ଭୁବନର ଶରଣ
ଏନକୁ ଦନ ଦୁଃଖ ହେଲା ଘୋର          ଧନ ଜନମାନେ ଛାଡ଼ିଲେ ଦୂର
ଦୟା ଏଣୁ ତେଜ, ଦାରୁଣ ହେଲ କ ଶ୍ରବଣ ବୁଜ । ୧ ।

ଦେଇ ଦେଇ ହେଲ ଭଣ୍ଡାର ଶୂନ୍ୟ          ଦୁଆର ନ ଛାଡ଼ିଲେ ଧନଜନ
ଏଛବ ତ ଦୁଃଖୀ ହେଲେ ପ୍ରବଳ          ଦେବାକୁ ଯେଣୁ ନ ପାଇଲ ବଳ
ଦୟା ଏଣୁ ତେଜ, ଦାରୁଣ ହେଲକ ଶ୍ରବଣ ବୁଜ । ୨ ।

ଦ୍ରୋହ କଲ ବା କମଳା ନାରୀଙ୍କି          ଦେଲେ ସେ ଭଣ୍ଡାର ଦ୍ୱାର ପାଶକ
ଧନେ ତୁମ୍ଭଙ୍କୁ ନ ମିଳିଲ ବେଳେ          ଦେବ କାନ୍ଦୁଁବା ମାଗିଲେ କବଳେ
ଦୟା ଏଣୁ ତେଜ, ଦାରୁଣ ହେଲ କ ଶ୍ରବଣ ବୁଜ । ୩ ।

ଦୂରେ ଥାଇ ଗଜ ଡ଼ାକ ଶୁଣିଲ          ଦୁଷ୍ଟ କୁମ୍ଭୀରକୁ ଚକ୍ରେ ହାଣିଲ
ଦ୍ରୌପଦୀ ଆରତ ଫେଡ଼ିଲ ଯେଣୁ          ଦୁଃସହ ଘାରା ହେଲ ଅବା ତେଣୁ
ଦୟା ଏଣୁ ତେଜ, ଦାରୁଣ ହେଲ କ ଶ୍ରବଣ ବୁଜ । ୪ ।

ଦ୍ୱି ସପ୍ତ ଲୋକରେ ମୋ ପରି ଯେଣୁ          ଦୁଃଖୀ ନ ଦେଖି ଭୟ କଲ ତେଣୁ
ଦାଇବେ ଦୀନରେ ଅଗ୍ରଣୀ ମୁଁ ତ          ଦବା ବଷରେ ଘେନେ ବ୍ରଜନାଥ
ଦୟା ଏଣୁ ତେଜ, ଦାରୁଣ ହେଲ କ ଶ୍ରବଣ ବୁଜ । ୫ ।



# ୧୪୦

ଆହେ ଜଗନ୍ନାଥ    ଦୁଃଖୀର ସଗାତ (ସଙ୍ଘାତ)  ନ ରଖିଲେ ଖସିପାଉଛୁ ।
ମତ୍ତ ଗରବରେ    ପ୍ରଭୁଙ୍କୁ ନ ଚିହ୍ନି    ତହିଁ ପ୍ରତିଫଳ ପାଉଛୁ ।୧।

ପୀନ ବାହୁଯୁଗ    ଟେକ ରଖିଅଛ    ଦୀନଙ୍କୁ ରଖିବା ପାଇଁ
ଜଗନ୍ନାଥ ତୁମ୍ଭ    ଜଗତ ଭିତରେ    ମୋତେ କି ଗଣିଲ ନାହିଁ ।୨।

କାଳକ ଯାକତ    ବାଳକ ବୁଦ୍ଧି ମୋ    ନ ଗଲା କେହ୍ନ ତରଛୁ
କାଳ ନାଶନ ନା-    ମକୁ ଆଶ୍ରେ କରି    ଅକାରଣରେ ମରୁଛୁ ।୩।

ନାହିଁ ତାତ ମାତ    ସ୍ୱାମୀ ଇଷ୍ଟ ମିତ୍ର    ଭାଇ ବନ୍ଧୁ ଥାଇ ନାହିଁ,
ଏପରି ଦରିଦ୍ର    ହେଲେ ହେଁ ସୁରେନ୍ଦ୍ର    ଆହା ବୋଲନ୍ତା ହେଁ ନାହିଁ ।୪।

ପତିତ ପାବନ    ବାନା ଉଡ଼ାଉଛ    ମୋ ଠାରେ ନ ଦିଅ ଦୃଷ୍ଟି
ପର ଅପର ବି-    ଚାର ତୁମ୍ଭେ କଲେ    କପରି ରହିବ ସୃଷ୍ଟି ।୫।
ଦୀନଜନଙ୍କର    ବନ୍ଧୁ ହୋଇ ଦୀନ-    ବନ୍ଧୁ ନାମକୁ ବହିଲ ।୬।

ନାହିଁ ଯା ବଳ ଆ-    ନ ଗଣ୍ଡି ସେ ତାକୁ    ସବୁ ତ ଗୋଚର କଲେ
ନଗ ଯେସନେ ଫଳ    ଫୁଟି ଶୀଘ୍ର ହୋଏ    କେବଳ ଧରା ଉପରେ ।୭।

କି ରୂପ ତୁମ୍ଭର    ଭଗତ ହୋଇଛୁ    କି ରୂପେ କରୁଛ ଦୟା
ଏହା ନ ଜାଣିଲି    ମୂରଖ ତ ହୋଇଲି    କେବଳ ଧରିଣ କାୟା ।୮।

ଘରେ ବସିଥାଇ    ମୁହେଁ ଦେଲେ ଖାଇ    ଚତୁର୍ମାଧ୍ୟା ବକ ପରି
ଅଜଗର ଜନ୍ତୁ    ଅଜାଣେ ଧାତା ବା    ଗଢ଼ିଲ ମନୁଷ୍ୟ କରି ।୯।

ପୂର୍ଣ ରତ୍ନଅଛୁ କରୁଣା ସମୁଦ୍ର ସରିଯିବ ତହୁଁ କେତେ
କୁଶାଗ୍ର ବିନ୍ଦୁରେ ସୁଖୀ ହୋଇବି ମୁଁ କୋଟି ଜନ୍ମ ପର୍ଯ୍ୟନ୍ତେ ।୧୦।

ଶିଷ୍ଟ କରଣକୁ- ଳରେ ଜାତ ହୋଇ ଇଷ୍ଟ ଭଜି ନ ପାରିଲି
ଅଶେଷ ରକ୍ଷଣ ଜଗତ କାରଣ ଚରଣେ ଶରଣ ଗଲି ।୧୧।

ରଖ ବା ନ ରଖ ମୋର ନାହିଁ ସଖ୍ୟ ସ୍ୱଧର୍ମତେ ସେହିବାର
ବାର ବାର କରି ଜଣାଉଛି ଧ୍ୟାନ ବ୍ରଜନାଥ ବଙ୍କର ।୧୨।



# ସାନନ୍ଦ ଦ୍ୱିଜ

## ( ୧୮ଶ ଶତାବ୍ଦୀ )

ଓଡ଼ିଆ ପଦ୍ୟାବଳୀ ସାହିତ୍ୟର ସ୍ରଷ୍ଟା ରୂପେ କବି ସାନନ୍ଦ ଦ୍ୱିଜ, ସୁପରିଚିତ । ତାଙ୍କର ପଦ୍ୟାବଳୀ ସମଗ୍ର ଏ ଯାବତ୍ ଆବିଷ୍କୃତ ହୋଇ ନାହିଁ । ଶ୍ରୀ ଜଗନ୍ନାଥଙ୍କୁ ଲକ୍ଷ୍ୟକରି ଲିଖିତ ହାଓଟି ମାତ୍ର ଜଣାଣ ତାଙ୍କୁ ଦେଶସାରା ଲୋକପ୍ରିୟ କରିପାରିଛି ।

କବିଙ୍କର କୁଳପରିଚୟ କିମ୍ବା ଆନୁଷଙ୍ଗିକ ତଥ୍ୟରାଶି କିଛି ମିଳେ ନାହିଁ । ତାଙ୍କର ପଦ୍ୟାବଳୀ ସୂଚନା ଦିଏ ଯେ କବି ଥିଲେ ଏକାନ୍ତ ଜଗନ୍ନାଥ ପ୍ରାଣ ।

# ୧୪୧

କାହାକୁ ମୁଁ କରିବଇଁ ସାକ୍ଷୀ
ହେ ଚକାଆଖି ! । ଘୋଷା ।

ଡାକିଲେ ନାମ ଆରତେ — ନ ଶୁଣ କର୍ଣ୍ଣ ଭୂଷଣେ
କି ବସିଛ ହୃଦଗତେ — ନ ଡେର ଶ୍ରବଣପଥେ
ଜପି ନାମ
କଣ୍ଠ ଗଲା ଶୁଖି ହେ ।୧।

ମୋ ଶୋଷ ଘଟ୧ ମାତର — ତୁମ୍ଭ କୃପା ଅକୂପାର୨
ରଖିଛ ରଙ୍କ ଉଦର — ତୃଷା ନ ହରଇ ମୋର
ହେଉଅଛ
ନିଷ୍ଠୁର କାହିଁକି ହେ ।୨।

ନେବ ବୋଲି କରୁ ଲଞ୍ଚ, — ମନେ କରିଅଛ ପାଞ୍ଚ
ସେ କଥା ମନରୁ ମୁଞ୍ଚ — ବନ୍ଦିଗଲା ମନ ସ୍ୱଚ୍ଛ
ଗୋପପୁରେ
ପଦ୍ମ-ସର ରଖି ହେ ।୩।

ପାଇ ନାନା ଉପବନ — ହେବାରେ ହରଷ ମନ
ଅଳସ କି ଅପଘନ — ଘାରିଲା ନିଦ୍ରା ନୟନ
ନଶୁଣୁଛ
ସେ କାରଣୁ ନିକି ହେ ।୪।

କହଇ ସାନନ୍ଦ ଦ୍ୱିଜ — ଆହେ ପ୍ରଭୁ ଚତୁର୍ଭୁଜ
ଗଲାକି ପୂର୍ବ ତେଜ — ଦୁଃଖି ଦୁଃଖ ଯା ନ ବୁଝ
ହୋଇବାରୁ
ନୀଳାଚଳେ ସୁଖୀ ହେ ।୫।



---

୧. ଘଟ – ମାଠିଆ, ୨. ଅକୂପାର—ସମୁଦ୍ର ।

ପାଠାନ୍ତର :—

କାହାକୁ କରିବଇଁ ସାକ୍ଷୀ, ହେ ଚକା ଆଖି !

ଜନ୍ମିଲେ ନାମ ଆରତେ — ନ ଶୁଣ କଥା କାହ୍ନତ
ନ ବସନ୍ତ ହୃଦଗତେ — ନ ଡେର ଶ୍ରବଣ ପଥେ
ରଟି ନାମ କଣ୍ଠ ଗଲା ଶୁଖି ହେ ।୧।

ମୋ ଶୋଷ କେତେ ମାତର — ତୁମ୍ଭ କୃପା ଅପାର
ରଖିଛୁ ରଙ୍କ ହୃଦର — ତୃଷା ନ ମେଣ୍ଟଇ ମୋର
ହେଉଅଛ ନିଷ୍ଠୁର କାହିଁକି ହେ ।୨।

ନେବ ପରା କହୁ ଲକ୍ଷ — ମନନ କରଛୁ କ ପାଞ୍ଚ
ସେ ଆଶା ମନରୁ ପୋଛ — ବଳାକଣି ମନ ସ୍ୱଚ୍ଛ
ବ୍ରଜପୁରର ଦୁଷ୍ପସର ବୃଷ୍ଟି ହେ ।୩।

ପାଇ ନାହିଁ କେତେ ସୁଖ — ଆହେ କାଳିଆ ଶ୍ରୀମୁଖ
ସେ ଲଗି କ ଅପଘନ — ଘାରଇ ନିଦ୍ରା ନୟନ
ନ ଶୁଣୁଛ ସେ କାରଣୁ ମନ ହେ ।୪।

କହୁଇ ସାନନ୍ଦ ସ୍ୱାନ — ହେ ପ୍ରଭୁ ଚକାନୟନ
ଗଲଣି କ ପୂର୍ବ ତେଜ — ଦୁଃଖି ଦୁଃଖ ଯା'ନ ବୁଝ
ହୋଇବାକୁ ନୀଳାଚଳେ ସୁଖୀ ହେ ।୫।



## ୧୪୨

କରୁଣାକର ! ଆହେ କରୁଣା କର
ଆରତେ ଡାକୁଅଛୁ ଯୋଡ଼ିଣ କର ହେ !
ଭେଦ ଜଞ୍ଜାଳ ମୋର ହର ସତ୍ୱରେ
ଖଟି ମୁଁ ଅଛୁ ପଗ ତୁମ୍ଭ ପଦ୍ମରେ ହେ ।୧।

ଏ ଘୋର ସଙ୍କଟରୁ କର ଉଦ୍ଧାର
ଉଆଁସ ଅନ୍ଧାର ତ ଚଜ୍ଦଗରେ ହେ !
ଘୋଟିଲ ସବ ମୋର ଦଶେ ମୁକର *
କେଣିକି ମିବ ନାହିଁ ଉପାୟ ମୋର ହେ ।୨।

କରୁଛୁ ନିବେଦନ ତୁମ୍ଭ ସମ୍ମୁରେ
ଭାସି ଯାଉଛୁ ପଡ଼ି ଶୋକ ସାଗରେ ହେ !
ବେଳକୁ ବେଳ ମୋର ବଢ଼ିଲା କଷ୍ଟ
ତୁମ୍ଭେ ତ ନିଷ୍ଟିନ୍ତରେ ଦେଖୁଛ ହଟ ★ ହେ ।୩।

ହେ ଚଉବାହା ! ମୋର ଆଉ କେ ସାହା
କଷ୍ଟ ଉପରେ କଷ୍ଟ ଦେଉଛ ଯାହା ହେ !
ରଖିଲେ ରଖ ଅବା ମାରିଲେ ମାର
ସାନନ୍ଦ ହୃଜ କରେ କୋଟି ଜୁହାର ହେ ।୪।



---

*. ମୁକର—ନଷ୍ଟ, ★. ହଟ—ହଟହଟା, ଅପଦସ୍ତ ଭଣବା ।

# କବି ଦୁଖିଶ୍ୟାମ ଦାସ

(୧୮ଶ ଶତାବ୍ଦୀ)

କବି ଦୁଃଖିଶ୍ୟାମ, ପଦ୍ୟାବଳୀର କବି ରୂପେ ପୁରପଲ୍ଲୀରେ ପରିଚିତ । କେତେକ ଚଉପଦୀ ଏବଂ କିଛି ଭକ୍ତି ଗୀତ ହେଉଛି ଏହାଙ୍କର ସୃଷ୍ଟି । ଏତଦ୍‌ଭିନ୍ନ କବି 'ମଧୁମଙ୍ଗଳ' ନାମକ ଏକ କାବ୍ୟ ରଚନା କରିଥିଲେ ବୋଲି ବନ୍ଧୁଚରଣ ପଟ୍ଟନାୟକ ଉଲ୍ଲେଖ କରନ୍ତି ।

କବିଙ୍କ ସମ୍ପର୍କରେ ଆଉ ଅଧିକ କିଛି ତଥ୍ୟ ମିଳେ ନାହିଁ ।



# ୯୪୩

ହେ ଜଗନ୍ନାଥ ! ଦୟାସାଗରେ
ମୋହ ବନ୍ଧୁରେ କପା କୃପା କ କର । ଘୋଷା ।
ପୂର୍ବେ ସୁଗ୍ରୀବର ସଙ୍ଗେ ମୈତ୍ର ହୋଇଲ
( ପଦ )

ସେଠାରେ ପ୍ରବେଶିଲ　　ସଙ୍ଗେ ମଇତ୍ର ହେଲ
ମନେ ପ୍ରତେଯିବାକୁ　　ସପ୍ତଶାଳା ଛେଦିଲ
ଚଦନ୍ତେ ଦୁନ୍ଦୁଭିର　　ଅସ୍ଥି ପଦେ ଫିଙ୍ଗିଲ
ମଇତ୍ର ଛଳେ ମାୟା　　ଯୁଦ୍ଧେ ବାଳି ମାରିଲ
ସୁଗ୍ରୀବେ ରାଜ୍ୟ ଦେଇ　　ତାରାକୁ ସମର୍ପିଲ
ବାନର ବଳ ଘେନି　　ସମୁଦ୍ରେ ସେତୁ କଲ
ଲଙ୍କା ଗଡ଼ ବିଧ୍ୱଂସି　　ରାବଣକୁ ମାରିଲ
ବିଭୀଷଣଙ୍କୁ ରାଜା　　ପଟେ ଶାଢ଼ୀ ବାନ୍ଧିଲ
ସୀତାଙ୍କୁ ବନ୍ଧନରୁ ଫିଟାଇଲ । ୧ ।

ପୂର୍ବେ ଗଜରାଜ ସଙ୍ଗେ ମୈତ୍ର କୁମ୍ଭୀର
( ପଦ )

ଜଳରେ ନେଇ ତାକୁ　　ପାଦଧରି କୁମ୍ଭୀର
ବିଶ୍ୱାସ କରି ତାକୁ　　ବନ୍ଧୁନେଲା କନ୍ଦର
କଷ୍ଟ ହୋଇ କାତରେ　　ଡାକିଲା ଆଦିମୂଳ !
ଦ୍ୱାରକା ପୁରେ ତୁମ୍ଭେ　　ସତ୍ୟଭାମା ସଙ୍ଗରେ
ପଶାରେ ଡାକ ମାନ　　ଲଗିଥିଲ ସେଠାରେ
ଚକ୍ରକୁ ବାଇ ଆଜ୍ଞା　　ଦେଲ କମଳାବର !
ଚକ୍ର ତୁ ବେଗେ ଯାଅ　　ଶିର ଛେଦନ କର
ଆଜ୍ଞାରେ ଚକ୍ର ଗଲା　　ଶିର ଛେଦନ କଲା
ଗଜକୁ ଉଦ୍ଧରିଲ ସେଠାରେ ।୨।

ପୁଣି ଗରଭିଣୀ ଏଣୀ ଶିଶୁ ଧଙ୍ଗର

( ପଢ଼ )

ଚରୁଥିଲା ବନରେ    ବ୍ୟାଧ ମିଳି ସେଠାରେ
ପାଶେକ ଶ୍ୱାନ ରଖି    ପାଶେକ ଦେଇ ଜାଲ
ପୂର୍ବ ଦିଗେ ଅନଳ    ଜାଳଣ ଖରତର
ଅତି ହରଷଭରେ    ଧାଇଁ ଆସି ଶବର
ଅଗ୍ରତେ ନମ୍ରହୋଇ    ଧରଇ ଧନୁଶର
ମନେ ସ୍ମରିଲା ତାର    ରଖ ହେ ଆଦିମୂଳ !
ବାଟେ ଗୁଡ଼ିଲା ଜାଲ    ଜଳେ ଲିଭେ ଅନଳ
ବଜ୍ରରେ ଶ୍ୱାନ ନାଶ    ଗଲା ସେନ୍ତ ଶବର
ଆନନ୍ଦେ ଏଣୀ ଗଲା ଦଉର ।୩।

ଦୁଃଖୀଶ୍ୟାମ କହେ ଭଜ କଞ୍ଜପପୁର

( ପଢ )

ଆହେ ରଙ୍ଗା ଅଧର    ମୋ ଦୋଷ କ୍ଷମାକର
ମୁଁ ତ ହୀନ ପାମର    ଶରଣରେ ଧଇର
ମୋଠାରୁ କେତ୍ତେ ଘୁର    ନାହିଁ ଏ ସଂସାର
କ୍ଷମା ନକଲେ ତୁମ୍ଭେ    କାହାର ହେବ ତେବେ
ତେଣୁ ତୁମ୍ଭ ପାଦରେ    କୋଟି ଜୁହାର କରେ
ନାହିଁ କ୍ଷମତା ମୋର    ତେଣୁ ଅକ୍ଷମ ନର
କର କରୁଣା ମୋତେ    ପାପ ଖଣ୍ଡ ବୁଲତେ
ତୁମ୍ଭେ କରୁଣାକର !    ଏଣୁ କରୁଣା କର
ଭବସାଗରୁ ହେବ ଉଦ୍ଧାର ।୪।

---

# ୧୪୪

ଅହେ ଦୀନବନ୍ଧୁ ଦୀନ-ମନ୍ଦାର-ଚନ୍ଦନା
ଶୁଣୁ ନାହିଁ କମ୍ପା ଏବେ ଦୁଃଖୀଜନ ଗୁହାରି ।

ଯେବେକାଳେ ବ୍ୟାଧ ପାଶେ ପଡ଼ିଥିଲା ଚଢ଼େଇ
ବୁଦ୍ଧିରେ କି ବେଗେ ଫେଡ଼ିଦେଲ କଷ୍ଟ ତାହାର ।୧।

ଖେଳୁଥିଲା ପଣା ଗଜ ଡାଳ ଦଂଷ୍ଟ୍ରେ ଶ୍ରୀପଣ
ତାଣିଲା କି ବେଗେ ତାକୁ ନକ୍ର ଚକ୍ର ପ୍ରହାର ।୨।

ଚିନ୍ତିବା ମାତ୍ରକେ ତୁମ୍ଭ କଥା କେତେ ମୂର୍ଖ
ଫାଟିଗଲା ଦାଣ୍ଡେପଡ଼ା ପକ୍ଷୀ ଗଲା ବାହାର ।୩।

ଅନୁଗତ ଜନେ ଏତେ ଅଙ୍ଗୀକାର ତୁମ୍ଭର
କାହିଁକି ଜଗିଛ କେତେ ତାର ହୋଇ ଦୁଆର ।୪।

କହେ ଦୁଃଖୀଶ୍ୟାମ ପକ୍ଷୀରାଜ ପଛେ ଚଢ଼ି
ବାରେ ଅନୁକମ୍ପା ମୋରେ କର ବଂଶୀ ଧାରି ।୫।



# ୧୪୫

ଆହେ ପ୍ରଭୁ ବୃନ୍ଦାବନ ଚନ୍ଦ୍ର ବ୍ରଜ ବିହାରୀ
ଏ ମୋ ଦୁଃଖ ତିମିର ଯାଅ କେବେ ସଂହାରି ।୦।

କାହିଁ ଥିଲ ଗଜ ତାକୁ ସାନ୍ତ୍ୱ କଲ ଉଦ୍ଧାରି
ଥାଉଁ ଥାଉଁ ପାଶେ ମୋର ଶୁଣୁ ନାହଁ ଗୁହାରି ।୧।

କାଳ-ଭାଲ୍ୟାର କଷ୍ଟରୁ ବଞ୍ଚିବାକୁ ଶ୍ରୀହରି
ଭଜୁଛି ତୁମ୍ଭଙ୍କୁ ମୁଁ ସକଳ ଧନ୍ଦା କଆସ ।୨।

ତାହାକୁ ଏ ଧନ୍ଦା ଦେବ ଥାଉ ତୁମ୍ଭ ଶ୍ରୀହରି
ନରେଖି ହୋଇ ଏ ପ୍ରାଣ ପିଣ୍ଡୁ ଗଲେ କାହାରି ।୩।

ଅଥୟେ କଲଣି ମୋତେ ଚିନ୍ତାଜଳ ଲହରୀ
ନ ଚାହିଁଲେ ଏଥୁ ଦୀନବନ୍ଧୁ ଦେବ କାହାରି ।୪।

କହେ ଦୁଃଖୀଶ୍ୟାମ ଦୀନ ଚକ୍ର ଚିନ୍ତା ପଡ଼ିଁର
କାହାକୁ କି ସୁଖ ହେଲ ନେଲ ଅବା ସହାରି ।୫।



# ଚଣ୍ଡୀ ଦାସ

(୧୮ଶ ଶତାବ୍ଦୀ)

କବି ଚଣ୍ଡୀ ଦାସ, ପଦ୍ୟାବଳୀର କବି ରୂପେ ସାଧାରଣରେ ଜଣାଶୁଣା । ତାଙ୍କ ରଚନାର ପରିମାଣ କେତେ ତାହା ଏଯାବତ୍ ସ୍ଥିର ହୋଇ ନାହିଁ; କେବଳ ତେର ଚଉଦଟି ଭକ୍ତି-ସଙ୍ଗୀତ ବିଭିନ୍ନ ପୋଥିପତ୍ରରୁ ଉଦ୍ଧାର କରାଯାଇଛି ମାତ୍ର ।

ଏ କାଳର ଅନ୍ୟାନ୍ୟ କବିମାନଙ୍କ ପରି ଚଣ୍ଡୀଦାସ ଥିଲେ ଶ୍ରୀକୃଷ୍ଣ ଉପାସକ । ଶ୍ରୀ ଜଗନ୍ନାଥଙ୍କୁ କୃଷ୍ଣ-ସ୍ୱରୂପରେ ସେ ଦେଖିଛନ୍ତି ଏବଂ ଆପଣା ମନର ହାରିଗୁହାରି ନିବେଦନ କରିଛନ୍ତି । କବିଙ୍କର କୁଳପରିଚୟ ଓ ଜୀବନ-ଚରିତ ସମ୍ପର୍କରେ କୌଣସି ଅଧିକ ତଥ୍ୟ ମିଳି ନାହିଁ ।

## ୧୪୭

ପାନୀପୁ ଦର୍ପ ଗଞ୍ଜନା
ନ ସହୁ ଭକ୍ତ ବେଦନା
ଦୁଷ୍ଟ ଅପରାଧୀ ହେଲେ
ଦଣ୍ଡ କରନ୍ତ ଖଣ୍ଡନା । ଘୋଷା ।

ସତ୍ୟ ଯୁଗେ ଦୈତ୍ୟ ବୀର
ବିଦାରିଲ ଅନ୍ତ ତାର
ତା ପୁତ୍ର ପ୍ରହଲ୍ଲାଦକୁ
ସ୍ୱର୍ଗରେ କଲ ରଚନା ।୧।

ତ୍ରେତାଯୁଗେ ଦଶାନନ
ନ ଭଜିଲ ତୁମ୍ଭନାମ
ତାହାଙ୍କୁ ବିନାଶ କରି
ବିଭୀଷଣଙ୍କୁ ସ୍ଥାପନା ।୨।

କୃଷ୍ଣ ରୂପେ କଂସ କେଶୀ
ଯାମଳା ବକା ବିନାଶି
ଶଚୀପତି ଗର୍ବ ଗଞ୍ଜି
ଗୋପୀଙ୍କ ମନ ରଞ୍ଜନା ।୩।

କଳିକାଳେ ନୀଳାଚଳେ
ବିଜୟ କରିଛ ହେଳେ
ସେ ଅଭୟ ଚରଣକୁ
ଚଣ୍ଡୀ ଦାସର ଭାବନା ।୪।



## ୧୪୭

ଜଗନ୍ନାଥ ଗୋସାଇଁ, ହଜେ ମୋ ଗୁହାରି ଶୁଣିଲ ନାହିଁ ।
ଜଗତ ଈଶ୍ୱର ସଂସାର ପାଳକ ଭକତ ବତ୍ସଳ କମଳା ସାଇଁ ।ପଦ।

ଗଜ ଉଦ୍ଧାରିଲ ମୃଗୁଣୀ ତାରିଲ ତରିଲ ଅହଲ୍ୟା ପଦକୁ ଧ୍ୟାୟି ।
ରଖି ବ୍ରଜବାଳ ନାଶିଲ ଅସୁର ଗୋବିନ୍ଦ ନାମ ତୁମ୍ଭର ଅଟଇ ।୧।

ବିକଟାଳ ରୂପ ନୃସିଂହ ହୋଇ, ହିରଣ୍ୟ ବଧିଲ ସ୍ତମ୍ଭ ଫଟାଇ ।
ଭକ୍ତ ପ୍ରହ୍ଲାଦକୁ ସ୍ୱର୍ଗପୁରରେ ସ୍ଥାପି ବଳୀକି ଚାପିଲ ପାତାଳେ ନେଇ ।୨।

ସୁଗ୍ରୀବ ସଙ୍କଟେ ମଇତ୍ର ହୋଇ, ବାଳୀକି ବଧିଲ ସାକ୍ଷାତେ ଯାଇଁ ।
ଦଶଶିର ଦଶକନ୍ଧକୁ ଛେଦନ ଶରଣ ରଖିଛ ରାବଣ ଭାଇ ।୩।

କୁନ୍ତି ପାଣ୍ଡବଙ୍କ ସମରଭୂଇଁ, ଭାରତ ଯୁଦ୍ଧ ସେଠାରେ ଅଟଇ ।
ଭଲଟିଆ ନାମେ ପକ୍ଷୀ ଏକ ଥିଲ ତାହାକୁ ରଖିଛ ଘଣ୍ଟ ଘୋଡ଼ାଇ ।୪।

ଆହେ ପୀତବାସ ନ କର ନିରାଶ ଚରଣେ ଶରଣ ପଶୁଛି ମୁହିଁ ।
ତୁମ୍ଭେ ନ ରଖିଲେ ଆହେ ମହାବାହୁ ନଷ୍ଟପ୍ରୁ ଅନାଥ ହୋଇଲି ମୁହିଁ ।୫।

ସବୁଙ୍କର ଧନ ସବୁରି ଜୀବନ ତୁମ୍ଭ ବିନା ମୋର ଶରଣ ନାହିଁ ।
ସର୍ବ ଜୀବପତି ପରଂବ୍ରହ୍ମ ଜ୍ୟୋତି ଶ୍ରୀ ନୀଳାଚଳରେ ବସିଛ ରହି ।୬।

ଆରତ ଭଞ୍ଜନ ପତିତ ପାବନ ଅନାଥଙ୍କ ବନ୍ଧୁ ସେହୁ ଅଟଇ ।
ବୋଲେ ଚଣ୍ଡୀ ଦାସ ନୀଳାଚଳେ ଆଣ କଳା ଧଳା ରୂପ ହୃଦରେ ଧ୍ୟାୟି ।୭।



## ୧୪।

ଦେଖିବ କଳା ଧବଳ ରୂପ
ଦେଖିଲେ ଖଣ୍ଡିବ ଏ ଭବତାପ । ଘୋଷା ।

ଚଉଦା ପାହାଙ୍କ ପାଦେ ପରବ୍ରହ୍ମ ତାହାଙ୍କ ଦର୍ଶନେ ନ ରହେ ପାପ,
ନର ଦେହ ବହି କହିତ ନୁହଇ ସୃଜ ସଂହାରୁଛି ଆପକୁ ଆପ ।୧।

ଆପେ ବ୍ରହ୍ମା ହୋଇ ସୃଷ୍ଟି କ ସୃଜଇ ଯୋଗୀଙ୍କ ହୃଦରେ କରୁଛି ଜପ,
ପଞ୍ଚାନନ ହୋଇ ପଞ୍ଚମୁଖେ ଧ୍ୟାଇ ସନାତନେ ଦେଖ ଚତୁର୍ଦ୍ଧା ରୂପ ।୨।

ଏହି ବିଶ୍ୱରୂପ ଆକାଶ ମଣ୍ଡଳେ ନାରାୟଣ ରୂପେ କରନ୍ତି ତାପ,
ଚତୁର୍ଦ୍ଦଶପୁର ନବଖଣ୍ଡ ମଧ୍ୟ ନିରଞ୍ଜନ ରୂପେ ମହା ପ୍ରତାପ ।୩।

ସତ୍ୟ ଯୁଗରେ ସତ୍ୟଗୁଣେ ବିହାର ହୋଇଥିଲେ ଶୁକ୍ଳାମ୍ବର ସ୍ୱରୂପ,
ତ୍ରେତୟା ଯୁଗରେ ରଜୋଗୁଣ ବହି ହରିଥିଲେ ଯାଇ ରାବଣ ଦର୍ପ ।୪।

ତମଗୁଣ ବହି ଦ୍ୱାପର ଯୁଗରେ ଜନ୍ମ ହୋଇଥିଲେ ଶ୍ରୀକୃଷ୍ଣ ରୂପ,
ଶ୍ରୀ ବୃନ୍ଦାବନରେ ରହାସ କରିଣ କଂସ ନାଶକଲେ ଗୁଡ଼ିଲା ତାପ ।୫।

ଏ କଳି ଯୁଗରେ ବୌଦ୍ଧ ଅବତାରେ ହୋଇଛନ୍ତି ପ୍ରଭୁ ମଉନ ରୂପ,
ବୋଲେ ଚଣ୍ଡୀ ଦାସ ନେତ୍ର ଦେଖି ନାହିଁ ଜନ୍ମ ଜନ୍ମାନ୍ତରେ କରିଛି ପାପ ।୬।



## କଳ୍ପଲତା ପ୍ରେମା

( ୧୮ଶ ଶତାବ୍ଦୀ )

ନାରୀ କବିଙ୍କର ପରିଚୟ ମିଳେ ନାହିଁ । ତାଙ୍କର ଗୋଟିଏ ମାତ୍ର ଜଣାଣ ଅଦ୍ୟାବଧି ସର୍ବତ୍ର ପ୍ରଚଳିତ ହୋଇଛି । ମନେ ହୁଏ, କଳ୍ପଲତା ରାଜବଂଶୀୟା ଥିଲେ । ଜଗନ୍ନାଥ-ପ୍ରେମରେ ସାରା ଜୀବନ କଟାଇଥିଲେ । ଦର୍ଶନ-ତୃଷା ତାଙ୍କର ଖୁବ୍ ପ୍ରବଳ, ଜଗନ୍ନାଥଙ୍କୁ କେବଳ ଦର୍ଶନ କରି ଯଦି ତାଙ୍କର ସକଳ ମାନସିକତା ମେଣ୍ଟି ଯାଉଥାଏ—ଏହା କମ୍ ବଡ଼ କଥା ନୁହେଁ । ଜୀବନରେ ଜଗନ୍ନାଥ-ମନନର ଏହା ଏକ ନୂତନ ଧାରା କହିଲେ ଚଳେ ।

## ୧୪୯

ଜଗତର ନାଥଙ୍କୁ ସେ ମୁରୁଛି ନୁହଇ ।
ଯେଣିକ ଚାହିଁଲେ ତେଣେ ଶ୍ରୀମୁଖ ଦିଶଇ । ପଦ ।

ଧନ୍ୟ ତାଙ୍କ ଚକାଆଖି ମନ ରହିଥାଏ ଲାଖି ।
ବାହୁ ଟେକିଛନ୍ତି ଦୁଃଖୀ, ତାରିବା ପାଇଁ । ୧ ।

ମାନମାନ କମ୍ପି ଥାଏ ପାଦତଳେ ଯାଇ ରହି ।
ସ୍ତମ୍ଭରେ ଗରୁଡ ଭକ୍ତେ ପଣି ନୁହଇ । ୨ ।

ଯେଣିକ ଦେଖିଲେ ନୟନ ଦିଶଇ କଳାବଦନ ।
କଟୀରେ ସେ ପୀତାମ୍ବର କି ଶୋଭାପାଇଁ । ୩ ।

କବି କଳ୍ପଲତା ଜେମା ବୋଲେ ଦୋଷ କର କ୍ଷମା ।
ଜେମା ବୋଲେ ପାତେ ଚଢ଼ ଉଠିବ ନାହିଁ । ୪ ।



# ଗୋବିନ୍ଦ ଭଞ୍ଜ

## ( ୧୮ଶ ଶତାବ୍ଦୀ )

ଗୋବିନ୍ଦ ଭଞ୍ଜ ହେଉଛନ୍ତି, କେନ୍ଦୁଝର ରାଜବଂଶର ଅନ୍ୟତମ ସନ୍ତାନ । ସମ୍ଭବତଃ ବଳଭଦ୍ର ଭଞ୍ଜଙ୍କ ସମସାମୟିକ । କେହି କେହି କହନ୍ତି; ଏ' ମହାଶୟ 'ତରୁଣ ସୁଧାନିଧି' ଓ ରାମଲୀଳା ନାମକ ଦୁଇଟି ଗ୍ରନ୍ଥ ରଚନା କରିଥିଲେ । ଏହାଙ୍କର ମତବାଦ ଶ୍ରୀ ଚୈତନ୍ୟ ପନ୍ଥୀ ବୈଷ୍ଣବ ଦର୍ଶନ ଅନୁକୂଳ ଥିଲା । ପ୍ରକୃତରେ ଏହାଙ୍କର ପଦ୍ୟାବଳୀ ରଚନା କେତେ, ତାହା ସମୁଦାୟ ଜଣାଯାଇନାହିଁ ।



## ୧୫୦

କୃପାସିନ୍ଧୁ ! ଦୀନବନ୍ଧୁ ! କାହିଁକି କରୁଣା ଊଣା ?
ମୋହପରି ଜନସ୍ଥାନ ଧରାଧାମେ ନାହିଁ ଶୁଣା । ଘୋଷା ।

ଭବ ଯା'ନ ଥିଲ ମନେ ବସାଇ ଉଚ୍ଚ ଆସନେ
ସୁଖ ସଙ୍ଗେ ଦୁଃଖ ଦେବା
ସ୍ୱପ୍ନ ତ ନଥିଲା ଜଣା ।୧।

ତୃଷାର୍ତ୍ତ ଜନେ ଆଦରେ ଡାକି ବସାଇ ପାଶରେ
ପିଇବା ଆଗୁଁ ଭଣ୍ଡିଲ
ଯାଚି ସୁଧାର ପଣା ।୨।

ବଢଇ ସଂସାର ସାର- ଫଳକୁ କଲ ଅସାର
ତାର କି ମୋ ଭାଗ୍ୟ ଦୋଷ
ଖାଇ ମୁଁ ଦେଖୁଛି ବଣା ।୩।

ତୁମ୍ଭର ମଙ୍ଗଳମୟ ଇଚ୍ଛାରେ ମୁଁ କରି ଲୟ
ନୋହୁଛି ଦୁଃଖିତ ପ୍ରଭୋ !
ପଡ଼ି ଏ ଝଞ୍ଜାଳେ ସିନା ।୪।

ନୃପତି ସୁତ ଗୋବିନ୍ଦ ବନ୍ଦଇ ପଦାରବିନ୍ଦ
ହେ ମଧୁଭାଷୀ ମୁକୁନ୍ଦ !
ମୋ ଦୁର୍ଭାଗ୍ୟ କର ଚୂନା ।୫।



# ରାମକୃଷ୍ଣ ପଟ୍ଟନାୟକ, କବିଚନ୍ଦ୍ର

( ୧୮ଶ ଶତାବ୍ଦୀ )

କବି ଚରିତ ଅଜ୍ଞାତ । କେତୋଟି ମାତ୍ର ପଦ୍ୟାବଳୀରୁ ତାଙ୍କର କବି-ଶକ୍ତିର ପରିଚୟ ମିଳିଥାଏ । କବି ଜଗନ୍ନାଥ-ପ୍ରେମୀ, ଭଜନ ଓ ଜଣାଣ ଲେଖାରେ ତାଙ୍କର ପ୍ରସିଦ୍ଧି । ଅନ୍ୟ କୌଣସି ସ୍ୱତନ୍ତ୍ର ରଚନା ତାଙ୍କ ନାମରେ ମିଳେ ନାହିଁ ।

କବିଚନ୍ଦ୍ର ଉପାଧି ରାଜ ପ୍ରଦତ୍ତ ହୋଇଥିବା ମନେ ହୁଏ । ସମ୍ଭବତଃ କବି, ଗଞ୍ଜାମର କୌଣସି ରାଜ-ଦରବାରରେ ପଣ୍ଡିତ କବି ରୂପେ କାର୍ଯ୍ୟ କରୁଥିଲେ । ଏପରି ଏକ ନାମ ସହିତ ଦକ୍ଷିଣ ଓଡ଼ିଶାର ସଙ୍ଗୀତଜ୍ଞଗଣ ପରିଚିତ ଥିବା, ସେମାନଙ୍କ ସହ ଆଲୋଚନାରୁ ମୁଁ ଜାଣି ପାରିଛି ।



## ୧୫୧

ଦୟାକର ଦୀନବନ୍ଧୁ !
କର ଯୋଡ଼ି ତୁମ୍ଭ ପଦେ
ଶୁଣେ ଯାଉ ଆଜ ଦିନ
କରୁଅଛୁ ନିବେଦନ । ଘୋଷା ।

ଅନାଦି ଅନନ୍ତ ହରି
ଲକ୍ଷ୍ମୀ ଦେବୀ ମନୋହାରୀ
କ୍ଷୀର ସାଗରେ ବିହାରୀ !
ପ୍ରଭୁ ପତିତ ପାବନ ।୧।

ମନଶାନ୍ତି ପ୍ରଦାୟକ
ରୁକ୍ମିଣୀ ପ୍ରାଣ ନାୟକ
ଦୁଷ୍ଟ ଶାସ୍ତି ବିଧାୟକ
ଜଗତ-ଜନ-ବନ୍ଦନ ।୨।

ଜଗଜ୍ଜନ ହିତକାରୀ
ମଧୁସୂଦନ ମୁରାରୀ
ଦଶ ଅବତାର ଧାରୀ
କାଳୀୟ ଦର୍ପ ଭଞ୍ଜନ ।୩।

ଯେଣେ ଚକ୍ଷୁ ପଡ଼େ ନାହିଁ
ଦେଖି ଚିତ୍ତ ପୁଲକଇ
ତୁମ୍ଭ କୀର୍ତ୍ତି ବିରାଜଇ
ହେ ଭକ୍ତ ହୃଦଚନ୍ଦନ ।୪।

ତୁମ୍ଭେ ଧ୍ୟାନ ତୁମ୍ଭେ ଜ୍ଞାନ
ତୁମ୍ଭ ବିନୁ ନାହିଁ ଆନ
ମୁକ୍ତିଦାତା ଭଗବାନ
କଳି-କଳୁଷ ନାଶନ ।୫।

ତୁମ୍ଭେ ଏ ସଂସାରେ ସାର
କୃତାନ୍ତଭୟୁଁ ଉଦ୍ଧର
ଆଉ ସବୁ ମାୟା ଘୋର
କହେ ରାମକୃଷ୍ଣ ଦୀନ ।୬।



# ୧୫୨

## ମୁଁ ଯେ ହସୁଛି
## ଦିବ୍ୟ ଅବଧାନକୁ ଆସୁଛି !

ବାଞ୍ଛାନିଧି କି ବଳଦେଲ ଜିହ୍ୱାରୁ ନଷ୍ଟ ଅଦୃଷ୍ଟ ମୋ ନାଶୁଛି ।ପଦ।

ପରମ ମୁଖ ଶ୍ରୀମୁଖ ଦେଖି ମନ ଆନ ସ୍ଥିରକୁ କି ରସୁଛି
ଏଡ଼େ ଅମୃତ ଦୃଷ୍ଟି ଦୃଷ୍ଟି ଭ୍ରାନ୍ତିରେ ବିଷ ବିନ୍ଦୁ ସ୍ଥିର ମାଗୁଛି ।

ଦୀନବନ୍ଧୁ ନାମ ଅହର୍ନିଶ ଧ୍ୟାନ କରନ୍ତେ ମୁଁ ଯେ ଘୋଷୁଛି
ଚିନ୍ତାମଣି ପାଇଁ ଚିନ୍ତାମଣି ହେଲି ସଂସାରକୁ ଏ କି ହସୁଛି ।

ଆହେ ହସି ହସି ଅନୁସରି ନସି ହନ ବୃନ୍ଦି ମୋ ଗୁମାନ ହସୁଛି
ଏଡ଼େ ପ୍ରଭୁଙ୍କୁ ଆଶ୍ରେ କଲି ହଥିରୁ ସେ ପୁଣି ଚଳକୁ ଖସୁଛି ।

ଯେଉଁ ପ୍ରଭୁର ଭୃତ୍ୟ ପଣେ ଥିବାର ଲୋକ ଜାଣି ଲୋକ ଘୋଷୁଛି
ସେ ପ୍ରଭୁ ଆଶ୍ରେକର ରାମକୃଷ୍ଣର ଦୁଃଖ କପାଁ ଯୋଚି ଆସୁଛି ।

## କବିଚନ୍ଦ୍ର ହନୁମାନ ରାୟଗୁରୁ

(୧୮୬୭ - ୧୯୧୯)

ଗଞ୍ଜାମ ଜିଲ୍ଲାର ଋଷିକୁଲ୍ୟା ନଦୀ ଉପକଣ୍ଠରେ ଅବସ୍ଥିତ ବ୍ରାହ୍ମଣଗ୍ରାମରେ କବିଚନ୍ଦ୍ର ହନୁମାନ ରାୟଗୁରୁଙ୍କର ଜନ୍ମ । ତାଙ୍କ ପିତାଙ୍କ ନାମ ଈଶ୍ୱର ଗ୍ରହରାଜ ଓ ମାତାଙ୍କ ନାମ ଅମ୍ବିକା ଦେବୀ । ଏକ କିମ୍ବଦନ୍ତୀରୁ ଜଣାଯାଏ ଯେ, ଶୈଶବରେ ସେ ଅତି ଚପଳମନା ଥିବାରୁ ପିତାମାତା ତାଙ୍କୁ ନାମ ଦେଇଥିଲେ ହନୁ । ପାଞ୍ଚବର୍ଷ ବୟସରେ ହନୁଙ୍କର ବିଦ୍ୟାରମ୍ଭ ଜଣେ ମାଟିବଂଶ ଅବଧାନଙ୍କର ତତ୍ତ୍ୱାବଧାନରେ ହୋଇଥିଲା । ତାଙ୍କର ତୀକ୍ଷ୍ଣ ମେଧା ଓ ଅଧ୍ୟୟନ ସ୍ପୃହା ଦେଖି ଅବଧାନେ ଅଭିଭୂତ ହୋଇ ପଡୁଥିଲେ । ବାଳକଟିର ଭବିଷ୍ୟତ ଉଜ୍ଜ୍ୱଳ ହେବ, ଏପରି ବିଶ୍ୱାସ ସମସ୍ତଙ୍କ ମନରେ ଜାତ ହୋଇଥିଲା ।

ନବମ ବର୍ଷ ବୟସରେ ହନୁମାନଙ୍କର ଚାଟଶାଳୀ ପଢ଼ା ଶେଷ ହେଲା । ତାପରେ ବ୍ରତ ଉପନୟନର ବ୍ୟବସ୍ଥା କରାଗଲା । ଉପନୟନ ପରେ ପୁତ୍ରକୁ ଈଶ୍ୱର ଗ୍ରହରାଜ, ଦାମୋଦରପୁର ଶାସନ ନିବାସୀ ପଣ୍ଡିତ ରଘୁ କରଙ୍କ ଦାୟିତ୍ୱରେ ସଂସ୍କୃତ ଶିକ୍ଷା ଲାଗି ଅର୍ପଣ କରିଥିଲେ । ଅଳ୍ପକାଳ ମଧ୍ୟରେ ହନୁମାନ ରାୟଗୁରୁ, ସାହିତ୍ୟ, ଅଳଙ୍କାର, ବ୍ୟାକରଣ, ବେଦ, ଦର୍ଶନ ପ୍ରଭୃତି ବିଭାଗରେ ପାରଦର୍ଶିତା ଲାଭ କରିଥିଲେ ।

ଶୈଶବ କାଳରୁ ହନୁମାନ ଈଶ୍ୱର ବିଶ୍ୱାସୀ ଥିଲେ । ପିତୃପୁରୁଷଙ୍କ ଦ୍ୱାରା ପ୍ରତିଷ୍ଠିତ ଇଷ୍ଟଦେବ ଶ୍ରୀ ବୃଦ୍ଧେଶ୍ୱରଙ୍କ ଆରାଧନାରେ ସମୟ ବିତାଉଥିଲେ । ଯୋଗ-ପନ୍ଥା ଅବଲମ୍ବନ କରି ସେ ତପନିଷ୍ଠ ଈଶ୍ୱର ଉପାସନା ବଳରେ ବହୁମୁଖୀ ଶକ୍ତିର ଅଧିକାରୀ ହୋଇଥିଲେ । ୧୮୫୦ ସାଲରେ ବଡ଼ଗଡ଼ ରାଜା ଦୁର୍ଗାମାଧବ ସିଂହ, ରାଜ୍ୟଭାର ଗ୍ରହଣ କଲାରୁ ହନୁମାନଙ୍କୁ ରାଜ୍ୟର ଦେବାନ ରୂପେ ନିଯୁକ୍ତ ଦେଇଥିଲେ ଏବଂ ତିନଶହ ପୃଳଶ ଟଙ୍କାର ବେତନ ବ୍ୟବସ୍ଥା କରି ଦେଇଥିଲେ । ଦେବାନ କାର୍ଯ୍ୟ ସୁରୁରୁ ରୂପେ ଚଳାଇ ହନୁମାନ ରାଜ୍ୟରେ ସର୍ବାଦୃତ ହୋଇଥିଲେ । ଏହି କାଳରେ ସେ, ରାଧାଗୋବିନ୍ଦ ଚମ୍ପୂ, ମାନଭଞ୍ଜନ ନାମକ ଦୁଇଟି ଗ୍ରନ୍ଥ ରଚନାକରି ରାଜାଙ୍କ ଠାରୁ 'କବିଚନ୍ଦ୍ର' ଉପାଧି ଲାଭ କରିଥିଲେ । ରାଜା, ହନୁମାନ ରାଜଗୁରୁଙ୍କର ଶାସନ ପରିଚାଳନାରେ ସନ୍ତୁଷ୍ଟ ହୋଇ ୧୮୫୧ ସାଲରେ ତାଙ୍କୁ ରାଜ୍ୟ ସର୍ବାଧିକାର କ୍ଷମତା ପ୍ରଦାନ କରିଥିଲେ ।

ବଡ଼ଗଡ଼ ଦେବାନ କାର୍ଯ୍ୟରୁ ଅବସର ନେଇ ସେ କିଛୁକାଳ ପାଇଁ ଧରାକୋଟ ରାଜା ବ୍ରଜସୁନ୍ଦର ସିଂହଙ୍କର ସଭା ପଣ୍ଡିତ ରୂପେ କାର୍ଯ୍ୟ କରିଥିଲେ । ଏଠି ଅବସ୍ଥାନ କାଳରେ ସେ, ଏକାଧିକ କବିତା ଲେଖି ରାଜାଙ୍କ ନାମରେ ଉତ୍ସର୍ଗ କରିଥିଲେ । ଧରାକୋଟରୁ ଚିକିଟି ଯାଇ ବିଶ୍ୱମ୍ଭର ରାଜେନ୍ଦ୍ର ଦେବଙ୍କର ସଭା-କବି ଆସନ ଅଳଂକୃତ କଲେ । ଏଠାରେ ରାଜଗୁରୁ ମହାଶୟ ଜଣେ ଶୁଦ୍ଧ ବୈଷ୍ଣବର ସମ୍ମାନ ଲାଭ କରୁଥିଲେ । ଏତଦ୍‌ଭିନ୍ନ କବିଚନ୍ଦ୍ର, ମଞ୍ଜୁଷା ରାଜା ବାସୁଦେବ ରାଜମଣି, ନୟାଗଡ଼ ରାଜା ଲଡ଼ୁକେଶ୍ୱର

ମାନଧାତା, ସାନଖେମୁଣ୍ଡି ରାଜା ଆନନ୍ଦ ଦେବ, ସୁରଙ୍ଗି ରାଜା ଚୈତନ୍ୟ ହରିଚନ୍ଦନ ଜଗଦେବ, ଖଲିକୋଟ ରାଜା ନାରାୟଣ ମର୍ଦ୍ଦରାଜ ଦେବ ପ୍ରଭୃତିଙ୍କର ରାଜସଭାରେ ସମ୍ମାନିତ ହୋଇଥିଲେ ଏବଂ ଜାଗିରି ସ୍ୱରୂପରେ ବହୁ ଭୂସଂପତ୍ତି ଲାଭ କରିଥିଲେ ।

କବିଚନ୍ଦ୍ର ଥିଲେ ଜଣେ ନିଷ୍ଠାବାନ କୃଷ୍ଣ-ଭକ୍ତ । ତୀକ୍ଷ୍ଣ ବୁଦ୍ଧି-ମତ୍ତା, ପାଣ୍ଡିତ୍ୟ ଓ ଚାତୁର୍ଯ୍ୟ ବଳରେ ସେ ସର୍ବତ୍ର ସମ୍ମାନିତ ହେଉଥିଲେ । ସେ ପ୍ରାୟ ଅଧିକାଂଶ ସମୟ ବୈଷ୍ଣବ-ଚିନ୍ତାରେ ମଗ୍ନ ରହୁଥିଲେ । କବିଚନ୍ଦ୍ରଙ୍କର ଜୀବନ, ଜନସେବା, ଭଗବତ୍ ସେବା ଓ ସାରସ୍ୱତ ସେବାରେ ହିଁ ଅତିବାହିତ ହୋଇଥିଲା । ତାଙ୍କର ସାରସ୍ୱତ-ସଂଚୟ, ସତ୍ୟନାରାୟଣ ଦାଶଙ୍କ ସଂପାଦନାରେ ରାୟଗୁରୁ ଗ୍ରନ୍ଥାବଳୀ (୧୯୮୦) ନାମରେ ପ୍ରକାଶ ପାଇଛି । ଜଣାଣ, ଭଜନ, ଚୌପଦୀ, ଢ଼ୁମ୍ପା, କୋଇଲି, ଚଉତିଶା, ଚମ୍ପୂ, ଓ ରାସ ପଞ୍ଚାଧ୍ୟାୟୀ ଆକାରରେ କବିଚନ୍ଦ୍ର ବହୁ ପଦ୍ୟାବଳୀ ରଚନାକରି ପୌଷ ଶୁକ୍ଳ ଏକାଦଶୀ ତିଥିରେ ସ୍ୱର୍ଗାରୋହଣ କରିଥିଲେ । ଏହାଙ୍କର ରଚନାବଳୀ ବହୁ ପ୍ରଚଳିତ ହୋଇନାହିଁ ସତ, ମାତ୍ର ଓଡ଼ିଆ ପଦ୍ୟାବଳୀ ସାହିତ୍ୟ କ୍ଷେତ୍ରରେ ସେ ଜଣେ ଅବିସ୍ମରଣୀୟ ପ୍ରତିଭା ।



## ୧୪୩

କୃପା ଜଳଧି ହେ କରୁଣା ହେବ କି ନାହିଁ ।
ଜନ୍ମଦେଇ ବାରେ କପଟ ହେଲେ ମୋ ଦୁର୍ଦ୍ଦଶା ତ ଅଛି ଥାଇଁ । ପଦ ।

କି ଅବା ପାପିଷ୍ଠ ବୋଲି ମୋ ଚିତ୍ତରେ ନ ବସିବ ରାଧା-ଧବ ।
ଜନ୍ମିଛ କେତେ ପତିତ ଉଦ୍ଧରିବା ସ୍ତବ ମୂର୍ତ୍ତି କଣ ରବ । ୧ ।

କପଟେ ପୂତନା ସ୍ତନ ଦେଇ ଆସି ପାଇଲା ଯେ ମନ୍ତ୍ର ଗତି,
କଷ୍ଟ ଦେଇ ୧ ପିଷ୍ଟପରେ ଅସୁରଙ୍କୁ ଦେଲ ତ ବୈକୁଣ୍ଠ ୨ ଭୂତି । ୨ ।

କଳିତ କରାଳ ଅଜାମିଳ-ଦ୍ୱିଜ ନରକ ଯେ ଶିଶୁପାଳ ।
କାକ ବକ ଷଣ୍ଢ ଶକଟା ଅଘକୁ ନାଶି ଦେଲ ଦିବ୍ୟ ସ୍ଥଳ । ୩ ।

କଣ୍ଠ ଭକ୍ତ ଧ୍ରୁବ ପ୍ରହ୍ଲାଦ ଉଦ୍ଧବ ସ୍ମରଣି ତୁମ୍ଭର ନାମ ।
କେତେଶାକୁ ଚଖିଲେ ବିଦୁର ଅକ୍ରୂରଙ୍କୁ ଦେଖାଇଲ ନିଜ ଧାମ । ୪ ।

କୀନାଶ ୩ ଦୂତଙ୍କ ଠାରୁ ଭୟ ମୋର ନୋହିବ କରୁଣ ହର ।
କୃଷ୍ଣ ରାଧେ ରାଧେ ଗୋବିନ୍ଦ ବୋଲିମୋ ଜୀବନ ଯିବ ବାହାର । ୫ ।

କଲି ସ୍ୱର୍ଗ ଦ୍ୱିଜ ଜନମ ଲଭି ମୁଁ ନ କଲି ଯେ ସାଧୁ ସେବା ।
କଞ୍ଚିତରେ ତୁମ୍ଭ ନାମ ନ ଭଜିଲି ଥାଉ ଅତିଥିଙ୍କ ସେବା । ୬ ।

କଳଙ୍କ ସୁତ ସୁତା ବନ୍ଧୁ ସୁମିତ୍ର ପ୍ରତିଷ୍ଠା ଜଳରେ ବୁଡ଼ି ।
କାନ୍ଦୁଛି ଏବେ ଦୀନବନ୍ଧୁଙ୍କ ଆଗେ ରଖିବଟିକ ମୋ ପ୍ରୌଢ଼ି । ୭ ।

କଳିନ୍ଦଜା ୪ କୂଳ ଶ୍ରୀକଦମ୍ବମୂଳ କୁଞ୍ଜ କୁସୁମ ତଳପ ।
କହୁଛୁକି ତ ଆପଣ କି ନ ଜାଣ ମୋ ମନର ସଂକଳପ । ୮ ।

କଣ୍ଠବଳ ଆରତରେ ଡାକିବାରୁ କଲ ନଷ୍ଟ ଭୟଁ ପାଶ ।
କି ନ ଜାଣ ଅତି ମୂରୁଖ ତା ଠାରୁ ମୁଁ ନଗୁଣ ମୋ ଗୁହାରି । ୯ ।

କହେ ହନୁମାନ ଦାଶ ପ୍ରଭୁ ହେନ ନୋହିଲ ମୁଁ ଗଲା ସରି ।
କୃପାକୁ ଦୀନୋଦ୍ଧାର ଥାଉ ମୋହର ଶୁଣିମ କେହୁ ଗୁହାରି । ୧୦ ।



---

୧ । ପିଷ୍ଟପ — ଜଗତ ।  ୨ । ଭୂତି — ସମ୍ପତ୍ତି ।
୩ । କୀନାଶ — ଯମ ।  ୪ । କଳିନ୍ଦଜା — ଯମୁନା ।

## ୧୫୪

ଖେଳ ରସିକ ହେ ଖଳ ମୁଁ ଜଗେ ଚୋରର,
ଖଗପତି-ଧ୍ୱଜ ଖିଆଲ ଦେଖିଲେ ଖରାପ ହେବ ଆଖର । ପଦ ।

ଖୁନଦାର ପରି ଖୋଜୁଛନ୍ତି ମତେ ଖଟୁଆ ଯମଙ୍କ ଦୂତେ ।
୧ ଖମଣି ତନୟା ତଟ ବିହାରୀଙ୍କ ଶରଣ ଖୋଜେ ମୁଁ ଭୀତେ । ୧ ।

ଖୁନ୍ଦା ମାରି ମାଣ ଯମ ପୁରେ ନେଇ ଖୋଳି ମୋ ପାତକ ଚପୁ ।
ଖୋଜା କେତେ ଲେଇଥାଇ କ୍ରୋଧେ ପଦେ ଶୃଙ୍ଖଳା ଦେବ ନଶ୍ଚପୁ ।୨।

ଖିତିରେ ମୋ ପରି ପାତକୀ କେ ନାହିଁ ଖବର ଗଲାଣି ଶୁଣା ।
ଖେଣ୍ଟ ପିଠା ପରି ଜୀବନ ଥାଉ ମୋ କରିବେଟି ବୁଝାମଣା । ୩ ।

ଖାଲି କେବଳ ମୋ ପାପ ଲେଖି ଲେଖି ମଲେଣି ଯମ କଙ୍କର ।
୨ ଖୁନା କେତେ ପୁଣି ଲେଖକ ହେଲାଣି ଚିତ୍ରଗୁପ୍ତ ଆଦିଙ୍କର । ୪ ।

ଖଣ୍ଡ ଖଣ୍ଡ କରି ଖସାଇ ମୋହର ଗରବ ଦେବେ ଛଡ଼ାଇ ।
ଖଟ ଶେଯ କରି ଶାଣଦିଆ ବାଣ ମୁନରେ ଦେବେ ଗଡ଼ାଇ । ୫ ।

ଖଞ୍ଜନାକ୍ଷୀ ରାଧା ବିହାରୀ ରସିକ ଶ୍ରୀ ବୃନ୍ଦା ବିପିନ ଚନ୍ଦ୍ର ।
୩ ଖୁରଅଗ୍ର କାଳ ନତ ମୋ ଘୁଞ୍ଚିଲେ ଭାଜି ଯିବ ତାଙ୍କ କେନ୍ଦ୍ର । ୬ ।

ଖଟଣିରେ ଥିବା କଂଶୋଗ୍ରାମଣିଙ୍କ ଦାନ୍ତୀ ୪ ପାଲି ୫ ଦାସୀ ଚେଟୀ ।
ଖଟିବାକୁ ମନ କରେ ବୋଲେ ଦନୁଦ୍ୟାନ ନତି ଦେଇ ଭେଟି । ୭ ।



---

୧ । ଖମଣିତନୟା — ଯମୁନା । ୨ । ଖୁନା — ଖଣ୍ଡିଆ ।
୩ । ଖୁରଅଗ୍ର — ଲତାଏ । ୪ । ପାଲି — ପଙ୍କ୍ତି ।
୫ । ଦାସୀଚେଟୀ — ଅଳ୍ପବୟସ୍କା ଦାସୀ ।

# ୧୫୫

ଗୁଣ ନିଧାନ ହେ ଗୁହାରି କହିବି କେତେ ?
ଗତିତ ମୋହରି ପତିତପାବନ ମତି ରହୁ ତୁମ୍ଭ ଗୀତେ । ପଦ ।

ଗୁରୁ ଉପଦେଶ ନ କଲି ସ୍ମରଣ ଗୋପୀଜନ ଉପାସନ ।
ଗୁଣିମାକୁ ତୁମ୍ଭ ନାମାବଳୀ ମୁହିଁ ନ ହେଲି ଯାହା ଭାଜନ । ୧ ।

ଗରବ କରି ମୁଁ ଦ୍ୱିଜ ଗୁମାନରେ ବେଦବିଧି ମନ୍ତ୍ର ଖୋଜି ।
ଗଣପତି ଆଦି ଯେତେ ଦେବତାଙ୍କ ସ୍ତୋତ୍ର ସୁମରି ଗରଜି । ୨ ।

ଗୋବିନ୍ଦ ଗୋପୀନାଥ ଗୋପ ସଖାଳି ଗୋଲକ ପରମେଶ୍ୱର ।
ଗୋପବ୍ରଜ ସୁତ ଗୋପାଳଙ୍କ ମିତ ଗୋପୀ ନବନୀତ ଚୋର । ୩ ।

ଗୋବର୍ଦ୍ଧନ ଧର ଗଜ ଆର୍ତ୍ତି ହର ଗୁରୁମୃତ ପ୍ରଦ ଦାତା ।
ଗ୍ରାହକ ଚକ୍ରବର୍ତ୍ତୀ ଗ୍ରାହ ଛେଦକ ଷଷୀ ଦେବଙ୍କର ପିତା । ୪ ।

ଗୋଚର କରିବି କିସ ଶ୍ରୀଚ୍ଛାମୁରେ ଗଣ୍ଡ ମୂରୁଖ ତ ମୁହିଁ ।
ଗର୍ଦ୍ଦଭ ଧ୍ୱନ ମୋ ନ ଶୁଣ କି ଅବା କୋପରେ ବିମୁଖ ହୋଇ । ୫ ।

ଗୋରଜ ପୂରିତ ସ୍ୱେଦ ବିନ୍ଦୁ ଯୁତ ମନ୍ଦ ସ୍ମିତ ଚନ୍ଦ୍ରମୁଖ ।
ଗୋଧନ ବାହୁଡ଼ା ହରଣ ସୁମରି ଯାଉ ହନୁମାନ ଦୁଃଖ । ୬ ।



## ୧୫୭

ଘନ ସୁନ୍ଦର ହେ ଘେନ ମୋ ଭବ ବେଦନା ।
ଘଡ଼ିଏ ବିଳମ୍ବ ହେଲେ ଘଟ ମୋର ଅକାରଣ ହେବ ସିନା । ପଦ ।

* ଘସ୍ର-ନାଥ-ସୁତ ଘେନି ଯିବାକୁ ମୋ ଜୀବନ କଲାଣି ପାଞ୍ଚ ।
ଘୋର ଦଣ୍ଡ ଦେବ ପାତକୀ ମୋ ପଶ ନଥିବେ ଖୋଜିଲେ ମଞ୍ଚ ।୧।

ଘେନି ଚର୍ମଚକ୍ଷୁ ବୁଲୁଛନ୍ତି ଆସି ଯମଦୂତେ ଗଣ୍ଡା ଗଣ୍ଡା ।
ଘଡ଼ି-ଘଡ଼ି ପଶ ରବକୁ କହଣ ଡଆଇଁ କରରେ ଖଣ୍ଡା ।୨।

ଘର ବୁଢ଼ା ବୋଲି ସକଳ ହଗେ ତ ମୋର ନାମେ ପଡ଼େ ଡାକ ।
ଘେନା ଘେନି କଷ୍ଟ ବଢନ୍ତି ମୁଁ ଅବା କେ ଭୁଞ୍ଜିବ ସେ ନରକ ।୩।

ଘନ ଶ୍ୟାମଳିଆ ଚନ୍ଦ୍ରକ ଚୂଳିଆ କାଇଁତ ମାଳିଆ ସୁନ୍ଦର ।
ଘଡ଼ିଏ ମାତର ହନୁମାନ ବୋଲେ ରେ ଜୀବ ଯା ଯା ବାହାର ।୪।



---

* ଘସ୍ରନାଥ — ସୂର୍ଯ୍ୟ, ଘସ୍ରନାଥ ସୁତ — ଯମ ।

# ୧୫୭

ନବ ନାଗର ହେ ନାଟ ଦେଖି ଦେଖି ମୋର ।
ନ ବୁଝିଲେ କୃପା ଦୃଷ୍ଟିରେ କଞ୍ଚେତ ନାହିଁ ଗତ ଶ୍ରିନପୁର । ପଦ ।

ନବ ରଙ୍ଗି ଅତ ଲପଟ ଆପଣ ଜାଣନ୍ତ ସଂସାର ଖେଳା ।
ନରକ କୃମିକୁ ନରକନ୍ତ ଯାଏଁ ଦେଖିଲତ ମୋର ଲୀଳା । ୧ ।

ନାହିଁ ତୋର ଆଉ କେଣ ଲୋଡ଼ା ବୋଲି ନିଷ୍ଠୁରରେ ହେଉ କୃପା ।
ନୋହିଲେ ମୁଁ ମାଗିବା ନାଟ ମେଲାଣି ୧ ସିଲ ହେଉ ମାଳ ବାହା ।୨।

ନଗରରେ ଡାକ ମଡ଼ଆଇ ଜନ ମୁଁ ମହାପାତକୀ ବୋଲି ।
ନୋହୁଛି ଗୋଚର ସର୍ବହୃଦ ବ୍ୟାପୀ ମୋ ବେଳକୁ ଏକ ୨ ସ୍ଥୂଳ ।୩।

୩ ନାକରୁ ୪ ନାଗପାଏଁ ରତ୍ନ ପଡ଼ିବ ନବୁଝିଲେ ପଦ୍ମମୁଖ ।
ନରେନ୍ଦ୍ର-ରକ୍ଷଣ ଦୀନବନ୍ଧୁ ପଦ ଲଭାଇବ ଶିରେ ରଖ । ୪ ।

କାଠ କାଠ ହେଲେ ରାଘବଙ୍କ ପଦ କାଂସ୍ୟ ଯିବ ଅଦା କରି ।
ନୋହିଲେ ପତିତ ପାବନ କେତନ ଝିଙ୍କି ଛଟି ଆଣ୍ଡେ ଧରି ।୫।

ନ କଲି ଭଜନ ଛୁମ୍ନ ନାମ ମ ନ ବୋଲି ହେଲି ଯେତେ ଦୋଷ ।
ନାରାୟଣ କିଂପା ବୋଲଅ ଆପଣ ବୋଲେ ହନୁମାନ ଦାସ ।୬।



୧ । ସିଲ — ଶୁଭ ।   ୨ । ସ୍ଥୂଳ — ସ୍ଥିର ।   ୩ । ନାକ — ସ୍ୱର୍ଗ ।
୪ । ନାଗ — ପାତାଳ ।

## ୧୫୮

ଚନ୍ଦନ ଲେପନ ହେ ଚିତ୍ତ ଖଣ୍ଡୁଛ କି ମୋର ।
ଚକୋରକୁ ଚନ୍ଦ୍ରିକାର ଊଣା ହେଲେ କିବା ଚିନ୍ତା ପ୍ରଭୁଙ୍କର । ପଦ ।

ଚଟୋଇବ କେତେ ଚତୁର ପଣେ ମୁଁ ୧ ଚୁକ କଥାକୁହା ପରି ।
ଚତୁର ଚକ୍ରବର୍ତ୍ତୀ ହେ କି ନଜାଣ ଚିତ୍ତୁଁ ବୁଝ ତ ପାସୋରି ।୧।

ଚୈଦ୍ୟ ୨ ଯୁଧିଷ୍ଠିର-ରାଜସୂୟ ବେଳେ କଲା ପରାଭବ ଯେତେ ।
୩ ଚଳିଲେ ସଭାରେ ଥିବା ଲୋକେ ବୋଲି ଚକ୍ରେ ଛେଦିଲ କାହିଁକେ ।୨।

ଚୋର ପଣେ ଦଶାନନ ନେଲା ହରି ଚଞ୍ଚଳା ପ୍ରିୟା ତୁମ୍ଭର ।
ଚିନାଏଁ ଖାତର ନଥାଇ ଚିରିଲ ଶରେ ଦଶମୁଣ୍ଡ ତାର ।୩।

ଚମତ୍କାର ମଣି ଚଳ ସେ ହିରଣ୍ୟ କୁମରକୁ ହାଣୁ ଥିଲ ।
ଚଣ୍ଡ କୋପ ମୂର୍ତ୍ତି ଧରି ବକ୍ଷ ତାର ନଖେ ବିଦାରିବା ହେଲ ।୪।

୪ ଚୋବାଇଲା ଦନ୍ତରେ ଗୃରୁ ପଡ଼ୁରକୁ ୫ ଚକ୍ଷୁଃଶ୍ରବା କଲା କୋପ
ଚିହ୍ନି ତାକୁ ବଳେ ଚରଣରେ ଦଳି ତା ଗରବ କଲ ଲୋପ । ୫ ।

ଚରିତ ତୁମ୍ଭର ନ କରେ ମୁଁ ଗାନ ଏ ଚିର ସଂସାରେ ଭ୍ରମି ।
ଚଣ୍ଡାଳ ମୁଁ ଦୋଷ କ୍ଷମା କର ବୋଲି ହେ ଚଉଦଲୋକ ସ୍ୱାମୀ ।୬।

ଚତୁର୍ବର୍ଗ ଦାତା ହରତା କରତା ପିତା ମାତା ସବୁ ମୋର ।
ଚାହୁଁ ନାହିଁ ଯାହା ଚରଣ ତୁମ୍ଭର ମୁଁ ଲୁଟିବ କି ୬ ଲତଖୋର ।୭।

ଚକ୍ର ନୀଳ ଉପରେ ଉଡ଼ୁଛି ବାନା ପତିତ ପାବନ ନାମ ।
ଚନ୍ଦ୍ର ଚମ୍ପୂ କଣା ଶ୍ରୀମୁଖକୁ ଏଣୁ ନ ଦେଖାଇ ହନୁମାନ ।୮।



---

୧ । ଚୁକ—ଚତୁର ।  ୨ । ଚୈଦ୍ୟ—ଚେଦି ଦେଶ ରାଜା (ଶିଶୁପାଳ) ।
୩ । ଚଳିଲେ—ଚହଟିଲେ ।  ୪ । ଚୋବାଇଲା—ଦଂଶନ କଲା ।
୫ । ଚକ୍ଷୁଃଶ୍ରବା—ସର୍ପ (କାଳୀୟ)  ୬ । ଲତଖୋର—ଠକ ।

## ୧୫୯

ଛଡ଼୍ ଗୋପାଳ ହେ ଛନ୍ଦ ନ ରଖ ମୋଠାରେ ।
ଛାର ଲୋକଟା ମୁଁ ବୋଲି ଛାଡ଼ିଦେଲେ ଛେଚା ହେବଟି ସେଠାରେ ।

* ଛଅଁନଅ କରି ଉଦର ପୋଷଇ ଛାଡ଼ି ଅଛି ତୁମ୍ଭ ସେବା ।
ଛବି କରି ମାତ୍ର ଛାପ ତିଳ କରେ ଛୁଇ କରେ ଅଂଗ ଶୋଭା ।୧।

ଛନ୍ଦ କଥା ଯେତେ ପାତକ ହେବାର ଛାମୁରେ ଗୁରୁଙ୍କ ଭାବେ ।
ଛ ଥର କହିଲେ ପଥର ଶରୀର $ ଦ୍ରବ ମୋ ନୁହଇ ଲବେ ।୨।

ଛେଳିଟା ହୋଇ ମେରୁ ମନ୍ଦର ଗିରିକୁ କରଇ ଚଢ଼ିବା ମନ ।
ଛାଗ ହୋଇ ବାଘ ଗିଳିବା ପାଇଁ କି କଲ୍ପଇ ମୋର ମନ ।୩।

ଛ ଆଠ ଭୁବନେ ମୋ ପରି ପାତକୀ ଖୋଜିଲେ ନାହିଁ ଯେ କେହି ।
ଛାଡ଼ି ତୁମ୍ଭର ନାମକୁ ନ ଭଜ ଗ୍ଲେଳାର ପଣରେ ମୁହିଁ ।୪।

ଛଡ଼୍ କି ବା ସତ ପତିତ ପାବନ † ଫଡ଼କା ଉଡ଼ା ତୁମ୍ଭର
ଛେଚ ବା ରଖ ବୋଲଇ ହନୁମାନ ଛଳ ଚଳ କି ଉଦ୍ଧାର ।୫।



---

* ଛ(ଅ)ନ(ଅ) ଛଳ — ମିଥ୍ୟା ।
$ ଦ୍ରବ — ତରଳିବା ।
† ଫଡ଼କା — ପତକା ।

## ୧୬୦

ଜଗନ୍ମୋହନ ହେ ଜୟ କୃଷ୍ଣ ଜଗନ୍ନାଥ ।
ଜଗତ ଭିତରୁ ମୁଁ ନକ ବାହାର ଜାଣି କରୁଛ ଅନାଥ । ପଦ ।

୧ ଜବରେ ଯେବେ ମୋ ଜୀବ ନ ତାରିବ ଜଞ୍ଜାଳ ଜାଲ ପକାଇ ।
୨ ଜୀମୂତ ଜଣା ଶ୍ରୀଅଙ୍ଗ ହେ ଜଳୁଛି ଜହର ଦେବଟି ଖାଇ ।

ଜଗତ ଲୋକେ ବୋଲିବେ ଯାହା ପଛେ-ଜାଣିମ କମଳାଧବ ।
ଜାଣି ଜାଣି ତୁମ୍ଭ ବାନା ବୁଡ଼ାଇବ ଜଗତୁଁ ଦୀନବାନ୍ଧବ । ୨ ।

ଜପ ତ ନ କରେ କ୍ଷଣେ ତୁମ୍ଭ ନାମ ଜନମ ଠାରୁ ମୋହର ।
ଜରାବସ୍ଥାରେ ମୋ ଜଳୁଛି ଜୀବନ ଯିବ ଜଗନ୍ନାଥପୁର । ୩ ।

ଜଗିବାକୁ ଆଉ କାଳ ନାହିଁ ମତେ ଯାହାଇଚ୍ଛା ତାହା କର ।
ଯାଇ ନରକରେ ବାସ କଲେ ହେଲେ ନାହିଁ ମୋ ତିଳିକ ଡର । ୪ ।

ଜୀବନ୍ତ ଯାକ ତ ପାପ ମୁଁ କରିଛି ଜାଣିଛନ୍ତି ଚତୁର୍ଦ୍ଦଶେ ।
ଯାହା ମୋ କରମେ ଲେଖିଥିବ ବିଧି ଜଣାହେବ କାଳବଶେ । ୫ ।

ଯାହାଙ୍କର ବାନା ଊର୍ଦ୍ଧ୍ୱରେ ଉଡ଼ଇ ସେ ପ୍ରଭୁ ଆରତତ୍ରାଣ ।
୩ ଜୃମ୍ଭା ମାତ୍ରେ କୋଟି ବ୍ରହ୍ମାଣ୍ଡ ଯେ କରେ ଆଖିର ସେ ମୋ ପରିତ୍ରାଣ ।୬।

ଜବାବ ନ ଦେଲେ ଜଣା ପଡ଼ିବଟି ୪ ଜଙ୍ଗମ ଜାଳରେ ପୂରି ।
ଜଲ୍ଟୁ ଥରେ ହରି ହନୁମାନ ମନ ନାକ ନର୍କ ଏହା କର । ୭ ।



---

୧ । ଜବ — ଶୀଘ୍ର ।    ୨ । ଜୀମୂତ — ମେଘ ।
୩ । ଜୃମ୍ଭା — ହାଇମାରିବା ।    ୪ । ଜଙ୍ଗମ — ପ୍ରାଣୀ ।

## ୧୬୧

ଜଗବନ୍ଧୁ ହେ ଜୟକୃଷ୍ଣ ଜଗନ୍ନାଥ ।
ଖାଇବା ଉପାୟ ନ କହିବ ଯେବେ ଯାଉ ଜୀବ ତୁମ୍ଭହାତ । ପଦ ।

ଜଗବନ୍ଧୁରେ ତ କୀର୍ତ୍ତି ହୁଏ ଦେଖ ଯଦି ମୁଁ କାହାକୁ ମାଗି ।
ଯାହାକୁ ମାଗନ୍ତି ଦେଲ ତାକୁ ମାଣ ହୋଇ କରିତ ବଇରାଗୀ । ୧ ।

ଜଗତ ଲୋକଙ୍କ ପଡ଼ିଦାତା ସବି ବୋଲନ୍ତି ସକଳ ଲୋକ ।
ଜାଣି ଆପଣ ଭୁଜ ଦେଖିଅଛ ତ କେତେ ପକାଇବ ଡ଼ାକ । ୨ ।

ଯାହା ଇଚ୍ଛା ତାହା କର ଦୀନବନ୍ଧୁ ଜଗିବାକୁ ନାହିଁ କାଳ ।
ଜହର ଖାଇବ ବୋଲି ବସିରୁଛୁ ଦେଖ ଆମ୍ଭଘାତ-ଫଳ । ୩ ।

ଯେ ଯାହା ବୋଲନ୍ତୁ ପଛରେ ମୋହର ଖାଇବ କାହିଁକି ଆଉ ।
ଯାହା ଜୀବ ବୋଲେ ହନୁମାନ ନ ଶୁଣିଲ ମହାବାହୁ । ୪ ।

---

## ୧୬୨

ଅସ୍ତ ହୋଇଲି ହେ ଅପାର କଷ୍ଟ ମୁଁ ପାଇ ।
ଅଦୃଷ୍ଟ ମୋହର ଅନ୍ତଃକାଳେ ଦୁଃଖ ଦେବାକୁ ଲାଗିଲା ବସି । ପଦ ।

ଅପରିମିତ ସୁଖ ଦେଇ ଆଦ୍ୟରୁ ଅଳପରେ କଥା ଗୁଡ଼ ।
ଅନାଥ ବନ୍ଧୁଙ୍କୁ ନତ ନତ କେତେ କରୁଥିବ ଏହି ରଡ଼ । ୧ ।

ଅଜାମିଳକୁ ଉଦ୍ଧରିଲ ପରି ଏ ଅଳପରେ ହେଉ କ୍ଷମା ।
ଅଗତି ପତିତ ବୋଲି ଜାଣିଛ ତ କେଉଁଥିରେ ମୁହିଁ ଜମା । ୨ ।

ଅନାଦର ଦେଖି ବଡ଼ ଲୋକଙ୍କର ଅନାଉଛୁ ତୁମ୍ଭ ଆଗେ ।
* ଅଘ କରିଛୁ ତ ଜନମରୁ ମୁହିଁ ଅନାଅ ହରିଷ ମୋହଗେ । ୩ ।

ଅଳପ ବଗୃଭ କରି ହୃଦପୁର ଆହେ ପଙ୍କଜ ଲୋଚନ ।
ଅରକ୍ଷିତ ପଦ ହଜାଇ ମୋହିଅ ବୋଲେ ଦାସ ହନୁମାନ । ୪ ।

---

* ଅଘ — ପାପ

## ୧୭୩

ଦୀନ ଦୟାଳୁ ହେ ହୀନ ନ ସହିଲ ମୋର ।
ଦାସ ବତ୍ସଳ କି ନ ଜାଣ ଆପଣ କର କପାଁ ଅନାଦର । ପଦ ।

ଦୀନମାନଙ୍କୁ ହିଆଉଥିଲ ଯାହା ଦେଲ ନାହିଁ ତହୁଁ ଲେଶ ।
ଦାଣ୍ଡରେ ହସନ୍ତି ଦେବା ନେବା ଲୋକେ ଗଣ୍ଡରେ ସେ ଉପହାସ । ୧ ।

ହାନୁଆ ଜନେ ତ ନ ହେନନ୍ତି ହଉ ଦେଇଥିବା ଉପକାର ।
ଦାରୁଣ ହୃଦୟ ହୋଇ ବୋଲନ୍ତି ଯା ଧିକ ହେଉ ଜୀଇଁବାର । ୨ ।

ଦାତା ପଣ ମୋତେ ଦେଇଥିଲ ଯେତେ ଦଣ୍ଡିଲେ ଦଣ୍ଡ ପଛକେ ।
ଦେଖି ତାଙ୍କ ସ୍ୱତ ଯାହା ହେଉଅଛି ମତ ମୋ ଦଣ୍ଡ ଦଣ୍ଡକେ । ୩ ।

* ଦାବ ଖାଇଲ ଲଖି କା ପାରେ ହିତ-ହରଣ ଗୋପାଳଙ୍କୁ ।
ଦେବ କେତେ ଅବା ପ୍ରଭୁ ଧନ ମତେ କୁଟୁମ୍ବ ଖୁଆଇଁବାକୁ । ୪ ।

ଦଶ ଶତ ପିନା ମାଗୁଅଛି ଏକ ତୁମ୍ଭଙ୍କୁ ଗୁରୁ ଏ କେତେ ।
ଦଣ୍ଡ ପଛେ ହଅ ଲୋକହସା ମୋହ ହନୁମାନ ବୋଲେ ଗୀତେ । ୫ ।



---
* ଦାବ — ବନାଗ୍ନି ।

## ୧୭୪

ଭକ୍ତ ବତ୍ସଳେ ହେ ଭାବଗ୍ରାହୀ ଜନାର୍ଦ୍ଦନ ।
ଭାବ ନ ଦେଇ ମାଗୁଅଛ ମତେ ତ ହେବକି କାମନା ପୂର୍ଣ୍ଣ ? । ପଦ ।

ଭଲ ହେବାକୁ ମୁଁ ଭଲ ବସ୍ତୁ ଯା ସେବିଲି ତୁମ୍ଭ ଚରଣ ।
ଘାଟ ପର ଉଡ଼ କରିବାର ଏକା ଦଶିଲି ଏଥୁ କାରଣ । ୧ ।

ଶୁଣେ ଭକ୍ତବନ୍ଧୁ ବୋଲି ଭରସିବି ମୁଁ ଭାବନାକୁ ଥାଏ କରି ।
ଭାସି ଭବଜଳେ ଯିବାବେଳେ ଆସି ନ ଉଦ୍ଧର ଯାହା ହରି । ୨ ।

ଭାରତୀ କମଳା ଗ୍ରେକ ତ ଆଗରେ ତୁମ୍ଭ ବେନି ପାଶେ ରହି ।
ଭକ୍ତି କହିବାର କଥାଟି ତୁମ୍ଭର ନ ମାନବଟି ଗୋସାଇଁ । ୩ ।

ଭାଲପଟେ ଲେଖା କେ ଆନ କରିବ ଯାହାଥିବ ସେ ଫଳିବ ।
ଭଗାରି ହସିବେ ଭଲ ସେବିଥିଲି ଏ ଫଳ ଦାନବାନ୍ଧବ । ୪ ।

ଭଲ ମନ୍ଦ ତ ଏ ସଂସାରେ ଲଗିଛୁ ଫଳିବ କରମ ଫଳ ।
ଭେଟୁ ଜଗନ୍ନାଥ ହନୁମାନ ପଛେ ପ୍ରଭୁ ତା ନୋହୁ ବିଫଳ । ୫ ।



## ୧୬୫

ମହା ମନ୍ତ୍ରମ ହେ ମହତ୍ତ୍ୱ ତ ହୃଅ ସାର ।
ମଣିଗଲେ ଭଲ ହୁଅନ୍ତା ଯାହାନ୍ତି ଦରିଦ୍ରଙ୍କୁ ଦେଇ ସାର । ପଦ
ମରକତ ତନୁ ମାଉଣା ବୋଲି ତ ନ ଥିଲା କାହାକୁ ଜଣା ।
ମୁହିଁ ତୁମ୍ଭ ଦାସ ହେବାଠାରେ ଶ୍ରବ କାହାର ହେବ ସେ ଗୁଣା । ୧ ।
ମହୀରଗ କାଳ ପଡ଼ିଛି ତ ବୋଲି ଲୋକମାନଙ୍କୁ ବଞ୍ଚାଇ ।
ମାଗି ମାଗି କେତେ ଭୋଗ ସମ୍ପାଦ ମୁଁ ଆସୁଥିବ ତୁମ୍ଭ ପାଇଁ । ୨ ।
ମନ୍ଦ ବୁଦ୍ଧି ଲୋକେ ଛନ୍ଦ ନହୁଅଛି ବୋଲି ସିନା ବର୍ଣ୍ଣିବେ ।
ମୋ ଦେହରେ ସାକ୍ଷୀରୂପେ ଅନ୍ତର୍ଯ୍ୟାମୀ ଥାଇ ବୁଝୁ ନାହିଁ ଲବେ । ୩ ।
ମାନ ଅପମାନ ସବୁଟି ତୁମ୍ଭର ଯାହା ଇଚ୍ଛା କର ତାହା ।
ମନ ବଢ଼ୁଛି କ ବୋଲେ ହନୁମାନ ଦସ୍ତାଥାଉ ତହୁଁବାହା । ୪ ।



## ୧୬୬

ଯଜ୍ଞ ମୂରତି ହେ ଯାଗଫଳ ଖାଇ ଖାଇ ।
ଜାଣତ ମୋହର ନାଶ ହେବା ଠାରେ କଅଁତ କରୁଣା ନାହିଁ । ପଦ ।
ଯକ୍ଷ ପିଶାଚଙ୍କୁ ଅନୁସରି ଥିଲେ ପାଇଥାନ୍ତି ଧନ କିଛି ।
* ଯତ ହୋଇ ତୁମ୍ଭ ପଦେ ଆଶା କରି ଲୋକରେ ବୋଲାଉ ଛି ଛି । ୧ ।
ଯାଦବ ମଣ୍ଡନ ରତ୍ନ ସିଂହାସନ ମଧ୍ୟରେ କରି ବହାର ।
ଯୋଗୀ-ଧ୍ୟେୟପଦ-ଅରବିନ୍ଦ ଭଜି ହୋଇଛି ଯା ନାରଖାର । ୨ ।
ଯଶକୀର୍ତ୍ତି ସବୁ କମଳା ବିହାର-ଚରଣ କୃପାରୁ ସିନା ।
ସେ ଅଛି ଚିତ୍ତରେ ପ୍ରକାଶ ହେଉ ତା ମୋ ପୂର୍ବ ଫଳ ବାସନା । ୩ ।
ଯମ ଦଣ୍ଡକୁ ମୁଁ ତରିଣ ତୁମର ଚରଣକୁ ଥାଏ ଭାବ ।
ଜୀର୍ଣ୍ଣ ହେଲା ଏବେ ଜଠର ବାଧାରେ କାହାକୁ ଏହା କହିବ । ୪ ।
ଯୁଦ୍ଧ $ ସନ୍ନାହରେ ବାହାରିବା ପରି ଦାରିଦ୍ର୍ୟ ମୋ ହୃଅ ନାଶି ।
ଯନ୍ତ୍ର ମନ୍ତ୍ର ସବୁ ଶ୍ରୀହରି ମୋ ବୋଲୁ ହନୁମାନ ଯାଏ ଭାସି । ୫ ।



---

* ଯତ — ସଂଯତ ।   $ ସନ୍ନାହରେ — ଯୁଦ୍ଧ ସଜ୍ଜା ।

## ୧୬୭

ଲକ୍ଷ୍ମୀ ବଲ୍ଲଭ ହେ ଲାଗିଛି ମୁଁ ତୁମ୍ଭପଦେ ।
ଜଗତ୍ ନଜର ମୋ ବିଷୟ ଯାହା ଲୀଳା ଦେଖୁଛ କି ୧ ଶଠେ । ପଦ ।

ଲାବଣ୍ୟ ନିଧି ତ ମହା କଉତୁକୀ ଲଗାଇଛ ଗୃହମାୟା ।
ଲୋକ ଅପବାଦ ଡରିବାରୁ ମୁହିଁ ଥୋକେ ବୋଇଲେଣି ବାୟା । ୧ ।

ଲାଞ୍ଛଦେଲ କେତେ ପାଞ୍ଚଦ୍ରବ୍ୟ ନିତ୍ୟ ଗୃହେ ନାହିଁ ଖାଇବାକୁ ।
ଜତାଏ ମାତର ହୁଅ ଦୟାପର ନ ଥରଅ ମୋର ବୁକୁ । ୨ ।

ଲେଖିଛି ବିଧାତା କପାଳେ ମୋହର ନିର୍ଦ୍ଧନ ହେବାକୁ ସିନା ।
ଲକ୍ଷ ଲକ୍ଷ କରି ମାଗୁଛି କି ମୁହିଁ ଦିଅ ବୋଲି ଟଙ୍କା ସୁନା । ୩ ।

ଲେଖିଛ ତ ଆଗେ ଶ୍ରୀମୁଖରେ କହି ରଣ ମଧ୍ୟେ ଅର୍ଜ୍ଜୁନଙ୍କୁ ।
ଲୋକ ଯେବେ ଥରେ ୨ ବିପନ୍ନ ହେବ ମୋ ଅଭୟ ଦେବି ମୁଁ ତାକୁ ।୪।

ଲଳନା ପାଇ ମୁଁ ନୁହେଁ କି ତୁମ୍ଭର ତୁମ୍ଭେ ତ ଜଗତ ପିତା ।
୩ ଲେସଡ଼ ମାଗିବ ଯେବେ ହନୁମାନ କେହ୍ନ ନ ପଢ଼ିବେ ଗୀତା । ୫ ।



---

୧ । ଶଠେ — ଛତାଏ ।
୨ । ବିପନ୍ନ — ବିପଦଗ୍ରସ୍ତ ।
୩ । ଲେସଡ଼ — ଦୈନ୍ୟ ପ୍ରକାଶ ପୂର୍ବକ ପୁନଃ ପୁନଃ ପ୍ରାର୍ଥନା ।

## ୧୭୮

ବିଧୁ ବଦନ ହେ ବିଧୁନ୍ତୁଦ ❋ ପରି ମୁହିଁ ।
ବିଶ୍ୱମ୍ଭରଙ୍କର କୀର୍ତ୍ତି ଚନ୍ଦ୍ରମାକୁ ଗ୍ରାସିବାକୁ ଅଛି ଧାଇଁ ।ପଦ।

ବୋଲିବ ଆପଣ ତୋ ଭ୍ରୂର ପାପିଷ୍ଠ ମୋହର କାରଣ [illegible] ।
ବଳେ ଗ୍ରାସିବାକୁ କ୍ଷମ ତୁ ହେବାକୁ ପାରିବୁଟିକି ଉରମି ? ।୧।

ବନ୍ଦୁଛି ତୁମ୍ଭଙ୍କୁ ପୁନଃ ପୁନଃ କରି ବନ୍ଦ ଶ୍ରୀଚରଣ ବେନି ।
ବଜ୍ରଧରି ଶଙ୍କ ଥିଲେ ମୋ ଆଗରେ ରହିବ କି ତାଙ୍କୁ ମାନି ? ।୨।

ବଢ଼ିଛି ଜଠରେ ବଡ଼ବାଗ୍ନି ମୋର ଶିଖାଟେକି ସହ୍ୟ ଲୋକେ ।
☆ବଳ-ଭାଇ ତୁମ୍ଭେ ବୋଲି ଡ଼ରିବ କି ନପୋଡ଼ି କାରଣ ଥୋକେ ? ।୩

ବଡ଼ ବାବୁ ବଳଭଦ୍ର ତ ମୋହର ବେଳେ ନ ମଡ଼ାନ୍ତି ପାଖ ।
ଦେଖିବ କି ରୂପେ ମାତ କମଳାକ୍ଷୀ କଲେ ତ ମତେ ନିରେଖ ।୪।

★ବାଇଦା କରୁଛି ବେନିବାର ମୁହିଁ ଯତ୍ନକରି ମୋର କଥା ।
ବୋଲେ ହନୁମାନ ବିପତ୍ତି ନାଶନ କାରଣ ହେବଟି ବୃଥା ।୫।

---

❋ ବିଧୁନ୍ତୁଦ—ରାହୁ । ☆ ବଳ - ବଳରାମ । ★ ବାଇଦା—ଡାଗିଦା/ଡାକରା ।

## ୧୬୯

ହରି ହରିବ ହେ ହୀନ ଥିଲେ ଏ କପାଳ ।
ହଳ ଭାଇଙ୍କର କୃପା ନୋହିବାରୁ ହରଷେ ନ ଗଲା କାଳ ।ପଦ।

ହରବର କେତେ ହେଲାନ ଯେ ମୁହିଁ ହରଙ୍କର ଭୋଗ ପାଇଁ ।
ହରି ବର ମତେ ନ ଦେବାରୁ ସିନା ବକଲେ ମନୁଷ୍ଟି ଧାଇଁ ।୧।

ହଜିଗଲା ମୋର ସଉଦା ସବୁ ତ ହାଟେ ବାଟେ ଯାଇ କରି ।
ହାଡ଼ ପରି ଲୋକେ ବଗୁର କରି ମୋ ଆବୁର ଦେଲେନି ସାରି ।୨।

ହସୁଛ ଆପଣ ଜଗତ କାରଣ ହେଉନାହିଁ ଦ୍ରବଲବେ ।
ହାତ ଖାଇବାକୁ ମାଣ୍ଡିକ ଖଞ୍ଜୁଛ ପେଟ ପୂରିବାକୁ ଏବେ ।୩।

ହାବୁଡ଼େ ପଡ଼ନ୍ତ ଯଦି ମୋର ତୁମ୍ଭେ ଜଙ୍ଗମ ରୂପକୁ ଧରି ?
ହାଲିବ କ ନାହିଁ ଜଣା ପଡ଼ନ୍ତାଟି ହାଟକ ବସନଧାରି ? ।୪।

ହରାଇ ଜୀବ ନ ଦେବାକୁ ମୋ ମନ କରୁଛ କ ହୀନ କରି ?
ହଠହଠା ହେବ ହନୁମାନ ବୋଲେ ଧନ ନ ଦେଲେ ମୁରାରି ! ।୫।

---

ହଳ ଭାଇ—ହଳଧର/ବଳରାମ । ଜଙ୍ଗମ ରୂପ—ଚଳନ୍ତ/ସଶରୀର ରୂପ ।
ହାଟକ ବସନ—ସୁନା ରଙ୍ଗର ବସ୍ତ୍ର/ପୀତ ବସ୍ତ୍ର ।

# ୧୭୦

କ୍ଷମା ସାଗର ହେ କ୍ଷମାକର ଦୋଷ ମୋର ।
କ୍ଷୁଧାରେ ବାଉଳ ପରି ହୋଇକରି ମୁହିଁ ଜଣାଇବା ଗିର ।ପଦ।

କ୍ଷୁଦ୍ର ଜୀବ ମୁଁ ତ ଖାଇବାକୁ ଭାତ ନ ଦେବାକୁ ପିନା କୋହେ ।
କ୍ଷଣକୁ କ୍ଷଣ ଗୋଚର କରୁଅଛି ଦୁଃଖିତରେ ଅତି ମୋହେ ।୧।

କ୍ଷପାକର ମୁଖ ଗୁହିଁ ମୁଁ ନିରେଖ ହୋଇ ମଲେ ତୁମ୍ଭ ଆଗେ ।
କ୍ଷୀରସିନ୍ଧୁ ଜେମାଙ୍କର ମନୋରଥ ପୂରି ହେବ ସେହି ଲାଗେ ।୨।

କ୍ଷେତ୍ରକୁ ତୁମ୍ଭର ଯାଇ ମୁଁ ଜଣାନ୍ତି ଖରଚ ମୋ ହାତେ ନାହିଁ ।
କ୍ଷୀଣବନ୍ତ ହୋଇ ପନ୍ଥାରେ ଗଲେ ମୁଁ ନାବିକେ ତ ନେବେ ନାହିଁ ।୩।

କ୍ଷିତିପତିମାନେ ମାର୍ଗରେ ଅଛନ୍ତି ତାଙ୍କୁ ଯାଇ ଦେଖା କଲେ ।
କ୍ଷୀଣବନ୍ତ ହୋଇ ଗଲେ ତାଙ୍କ ପାଶ କେହି ନ ଗୁହିଁବେ ଭଲେ ।୪।

କ୍ଷୋଭରେ ମୋ ମନ ଥରୁଛି ମୋହନ କରିବ କେତେ ଗୁହାରି ।
କ୍ଷମାକର କବା ଦଣ୍ଡ ଦେଇ ମାର ଶୁଣ କହୁଛି ଜୁହାରି ।୫।

କ୍ଷାଳିତ କରି ମୁଁ ପଙ୍କଜ ପଯୂର ବେଜ ମାଗୁଅଛି ଧନ ।
ଖ୍ୟାତ ହେଉ ଯଶ ବୋଲେ ହନୁମାନ ଯା' ଅଛି ପ୍ରଭୁଙ୍କ ମନ ।୬।

---

କ୍ଷପାକର—ଚନ୍ଦ୍ର । କ୍ଷିତିପତି—ନୃପତି । କ୍ଷାଳିତ—ଶୌଚ, ଧୂଆଇବା ।

# ୧୬୧

କରୁଣାନିଧି ମୁଖ, ଶୁଣି କେଉଁ ଲେଖ, କହଇ ବେନକର ଯୋଡ଼ି ।
କୃପାଳୁ ହୋଇ ମୋର, ଦୁଃଖ ପୀଡ଼ା ନ ହର, କରିବ ଆଉ କେତେ ରଡ଼ି ।
ହେ କଞ୍ଜନେତ୍ର ।

କାହୁଁ ଶିଖିଲ କୃପଣତା, କି ଅବା କର୍ମେ ମୋ ଧାତା ।
କରିଅଛ ଲେଖନ, ବୋଲି ହୁଅ ମଉନ, ହେ ତିନି ଜଗତର ପିତା ।୧।
ହେ କଞ୍ଜନେତ୍ର ।

ଖଳ ଲୋକଙ୍କ ବାଣୀ, ଶୁଣି କି ଯୁବାମଣି, ଚିତ୍ତ ହୋଇଲା ପରବଶ ।
ଖେଳ ଦେଖିବା ପାଇଁ, କିବା ଅଛ ଭୁଆଇ, ଉଡ଼ାଉଛ ତ ମୋ ସାହସ ।
ହେ ଖଣ୍ଡଗୁରୁ ।

ଦାରଙ୍କ ପରି ମତେ, ଖାତର ନ ରଖୁଛ ଚିତ୍ତେ ।
ଖୁଲାସା କରି କହ, ଫିଟୁ ମୋର ସନ୍ଦେହ, ଜାଣନ୍ତୁ ଏହା ବିଜଗତେ ।୨।
ହେ ଖଣ୍ଡଗୁରୁ ।

ଗରୁଡ଼ ଚଢ଼ି ଖରେ, ଗଲ ତ ଉଦ୍‌ବେଗରେ, ଗଜରାଜ ଡାକବା କ୍ଷଣି ।
ଗ୍ରାହକୁ ଦେଲ ହାଣି, ତକ୍ଷଣେ ଚକ୍ରପାଣି, ଗୋଟିଏ ଥର ଶୁଣି ବାଣୀ ।
ହେ ଗୋପୀପତେ ।

ଗୁଣୁଛି ପଦ୍ମ ଏତେ ନାମ ଗୋଲକନାଥ ହୁଅ ବାମ ।
ଗୋପୀ ଗୋପାଳଙ୍କର, ଦୁଃଖ ଦେଖିଣ ଧର, ଧଇଲ କମ୍ପା ଘନଶ୍ୟାମ ।୩।
ହେ ଗୋପୀପତେ ।

ଘୋର ସଙ୍କଟ ବେଳେ ଦ୍ରୁପଦ ସୁତା ହେଲେ ଡାକନ୍ତେ ଦେଲ କୋଟିବାସ ।
ଘନେ ବନ ଦାହନ୍ତି, ବଞ୍ଚାଇ ଗାଈ ଗୋପ୍ତି, ପିଇଲ ଅନଳର ଶ୍ୱାସ ।
ହେ ଘନଦ୍ୟୁତି ।

ଘଟନା ଦୁର୍ଘଟନା ବିଧି, ଘେନିବା ନ ଘେନିବା ସିଦ୍ଧି ।
ଘାରି ମୁଁ ହୁଏ ସିନା, ସବୁ ଭୂମି ବାସନା, କହ ମୋ ବଞ୍ଚିବାକୁ ବୁଦ୍ଧି ।୪।
ହେ ଘନଦ୍ୟୁତି ।

ନଗରେ ପଡ଼ିଲା ଡାକ, ସବୁ ଲକ୍ଷ୍ମୀ ନାମ୍ବକଙ୍କର ଭଆଣ ବୋଲି ।
ନ ଗୃହିଁ ଚକ୍ଷୁ ବୁଜ, ଦେଲ କି ଭୂତେ ଆଜ, ନ କହ କମ୍ପା ଚଉ ଖୋଲି ।
ହେ ନନ୍ଦସୁତ ।

ନାଗରୀ ବାଜେ ନାଗ ଲୋକ, ନାକକୁ ବୋଲି ଶୁଭେ ଡାକ ।
ନନ୍ଦା ପାଇବ ମୋର, ସରିଲେଣି ଆବୁର, ଛୁ ଛୁ କରିବେ ରସା ଯାକ ।୫।
ହେ ନନ୍ଦସୁତ ।

ଚନ୍ଦ୍ରକଚୁଲିଆଙ୍କୁ, ଯେତେ ମୁଁ କଲି କାକୁ, ଗୃହୁଁ ଯା ନାହିଁ ତ ଅଳପେ ।
ଗୃପକିଣୀରଧର, ଗ୍ରେବାଛ ଅଜଗରେ, ନନ୍ଦକୁ ଗିଳୁଥିଲା ଗୋପେ ।
ହେ ଚକ୍ରହାତ ।

ଗୃପୋଣ୍ଡେ, ମାରିଣ ତା ଶିର, ଗୃକ ଛଡ଼ାଇ ଦେଲ ତାର ।
ଚକ୍ରବପୁକୁ ଧରି, ଚଳିଲା ସର୍ଗପୁରୀ, ବିମାନେ ଚଢ଼ି ବିଦ୍ୟାଧର ।୬।
ହେ ଚକ୍ରହାତ ।

ଛଳ ମୋ ଦେଇ ଶିରେ, ଛୋକାର ଜନକରେ, ଛିକାର କରାଉଛ ଯାହା ।
ଗ୍ଣୁଡ଼ ମୁଁ ଏ ଅବଣା, ଦେବଟି ଭୁମ୍ଭଦେନ, ହେବ କି ଏହା ଦେହ ସୁହା ?
ହେ ଛନ୍ଦୋମୟ ।

ଛନ୍ଦ ନ ରଖ ଦାସ ଜନେ, ଗ୍ଣୁର ମୁଁ ବୋଲି ଦେନ ଜ୍ଞାନେ ।
ଛେଚୁଛ କିର ଶିର, ଚଢ଼ାଇ ଯେ ଗମ୍ଭୀର-ନଦେ ବୁଡ଼ାଇ କ୍ରୋଧ ମନେ ।୩।
★ ହେ ଛନ୍ଦୋମୟ ।

ଜଗନ୍ନାଥ ଜଗତ-ବନ୍ଧୁ ବୋଲି ତ ଖ୍ୟାତ ହୋଇଛି ତିନି ଲୋକେ ଯଶ ।
ଜାଣି ଜାଣି ଆପଣ, ନ କଲେ ମତେ ତ୍ରାଣ, ରହିବ କାହାରିଟି ଆଶ ।
ହେ ଜଗବନ୍ଧୁ ।

ଯେବେ ଗ୍ଣୁଡ଼ିବ ପ୍ରଭୁ ମତେ ଜବରେ କହି ଦିଅ ଏତେ ।
ଜହର ଦେବ ଖାଇ, କି ହେବ ଜୀଇଁଥାଇ, ଜଞ୍ଜାଳ ନ ଦେବ କାଣ୍ଟିତେ ।୮।
ହେ ଜଗବନ୍ଧୁ ।

---

★ ହେ ଛନ୍ଦୋମୟ — ଦେବମୟ

ଝଟତି ଆଜ୍ଞା ହେଉ, ମତେ ହେ ମହାବାହୁ, ଝାଙ୍କଇ ଦୁଃଖ ମୋ ଶରୀର
ଝଲକ ତୁମ୍ଭ ଆଗେ, କହିଲେ ଭୟ ଲାଗେ, ତୁମ୍ଭେ ତ ତ୍ରିଲୋକ ଈଶ୍ୱର
ହେ ଝସରୂପୀ ।

ଝୁରୁଛି ଦେଖିଣ ମହିମା, ଝାଙ୍କୁଛି ମୋ ମନ ମଣିମା ।
ଝୁଣ୍ଟିଲେ ଯିବ ପ୍ରାଣ, ଏଭଳ ହେଲା ଜାଣ, ଦୋଷ ମୋ ଥିଲେ
ହେଉ ଷମା ।୯।
ହେ ଝସରୂପୀ ।

ଞରଜ ଚରଣକୁ, ଭାବନା କରି ଦୁକୁ, ଦୁକୁ ହେଉଛି ଯାହା ମନ ।
ଞରତେ ଅନୁସରିବାର ଫଳ ମୋହରି ଏତିକ ହେବପରା ଘେନ ?
ହେ ଞାଲତନୁ ।

ଞଣ ଟେକାଇ ଆଗୁ ମୋର, ନାକ କାଟିବା ପରି କର ।
ଞରେଖ ରଖ ବୋଲି, ମୁଁ ଯାଉଥାଏ ଫୁଲି, ଏଣିକି ହେବ ଲତଖୋର ।୧୦।
ହେ ଞାଲତନୁ ।

ଟମକେ ହୁଏ ଧ୍ୱନି, ଟେକଛ ଭୁଜ ବେନି, ଶରଣ ରଖିବାର ପାଇଁ ।
ଟାକେ ମୁଁ ଏହି ଘେନ, ଟଳ ଗଲେ ମେଦିନୀ, ଅନ୍ୟଥା ନୋହିବ ଗୋସାଇଁ ।
ହେ ଟେକ ରଖା ।

ଟାଳ ଦେବକ ଆଶା ମୂଳ, ଟିକଏ ନ ଦଶଇ କୂଳ ।
ଟୋକାଏ ହସିକରି, ଟେକା ପିଙ୍ଗିବେ ଧରି, ଏତିକ ମାତ୍ର ହେବ ଫଳ ।୧୧।
ହେ ଟେକରଖା ।

ଠଉରିବାକୁ ମତେ, ଉପାୟ କହ ସତେ, ନୋହିବ କି ମୋ ପରିହାଣ ।
ଠାକୁର ବ୍ରହ୍ମାଣ୍ଡର, ଥାଉ ଥାଉ ମୋ ଡର, କରିବେ ଯେବେଟି ଭିଆଣ ।
ହେ ଠକଶିଖ ।

ଠାବ ନ ଦିଶେ କାହିଁ ମତେ, ଠେକ ମୋ ତୁମ୍ଭେ ରମାପତେ ।
ଠକତ ହେବ ଶିର, ଠଣାରେ ବଂଶୀଧର, ଠିକରେ କହି ଦିଅ ମତେ ।୧୨।
ହେ ଠକଶିଖ ।

ଡରତ ଲାଗିଲାଣି, ଡାକକୁ ଶୁଣି ଶୁଣି, ଡମ୍ଭ ସମାନ ଲୋକଙ୍କର ।
ଡାକଲେ ମୁଁ ନ ଶୁଣ, ଯାହାଟି ହେ ଆପଣ, କରି ଦେଲକ ମନୁ ଦୂର ।
ହେ ଡୋଳାଧନ ।
ଡେରତ କାନ ଶୁଣ ବୋଲି, ଡାକ ପଡ଼ୁଛି ଯାଅ ଭୁଲି !
ଡନୁଆ ଦେଖି ମତେ, ଦଣ୍ଡିବାକୁ ପୁରତେ, ବଗୁରୁଛ ଯା ଏକ ଗୁଳ ।୧୩।
ହେ ଡୋଳାଧନ !

ଢାର୍କି ମୋ ପରେ ଭୁଜ, ନ ରଟଲେ ସରୋଜ-ମୁଖକୁ ହେବଟି ହେ ଲାଜ ।
ଢଳି ଯିବାରେ ପ୍ରାଣ, ସନ୍ଦେହ ନାହିଁ ଜାଣ, ନଷ୍ଟପୂ କହୁଛି ମୁଁ ଆଜ ।
ହେ ଢଙ୍ଗରଖା ।
ଢୁକାଇ ତବ ଆଗେ ପଡ଼ି, ଢାଳେ ମୁଁ କରୁଅଛି ରଡ଼ି
ଢାଳ ଶ୍ରୀଅଙ୍ଗ ଥରେ, ପକାଅ ଦୃଷ୍ଟି ମୋରେ, ନୋହିଲେ ଗଲାଟି ମୁଁ ସଡ଼ି ।୧୪।
ହେ ଢଙ୍ଗରଖା ।

ଅନନ୍ତ ବ୍ରହ୍ମାଣ୍ଡର, କରତା ପ୍ରଭୁ ମୋର, ଅଳପ ଲୋକ ହେଲେ ମୁହିଁ ।
ଅଦୃଷ୍ଟ ଥିଲେ ଫାଟି, ଅନାଇଁ କୃପାଦୃଷ୍ଟି-ପଥରେ ଅବା ଦେବ ରୁହିଁ ।
ହେ ଅଘନାଶି ।
ଏଣୁ ମୁଁ ଦୃଢ଼ ଥାଏ ରଖି, ଆହା ନ ବୋଲ କଷ୍ଟ ଦେଖି ।
ଅରକ୍ଷ ମୁହିଁ ବୋଲି, ଯାଉଛ ଅବା ଭୁଲି, କେତେ କହିବ ସାକ୍ଷୀ ରଖି ।୧୫।
ହେ ଅଘନାଶି ।

ତପନ ତନୟାର, ତୀରେ ତେଢ଼େ ବକର ବେକକୁ ଦେଲ ପରି ଚିରି ।
ତମାଳ ଦଳଦ୍ୟୁତି, ତନ୍ଦ୍ରି ଦେଖି ଅତି, ତେଣ୍ଡାକୁ ଦିଅ ପେଲି ।
ହେ ତେଜୋମୟ ।
ତୁମ୍ଭ ଭିଆଣ ସବୁମିନା, ତାର କି ମାରି ନନ୍ଦକହ୍ନା ।
ତିଲୋକ ଜନ ରଖି, ମତେ ଦେବ ଉପେକ୍ଷି, ବୋଲି କି ବାନ୍ଧିଅଛ ବାନା ।୧୬।
ହେ ତେଜୋମୟ ।

ଥରୁଛି ଦେହ ମୋର, ସ୍ଥିତି ତ୍ରିଲୋକ୍ୟ କର, ଥିବର କରି ଦିଅ ମତେ ।
ଥଳକୂଳ ନ ପାଇ, ଯେବେ ଭାସିବି ମୁହିଁ, ଥାପି କରିବ କେ ଜଗତେ ।
ହେ ସ୍ଥୂଳବପୁ ।

ଥାନ ତ ଆଉ ନାହିଁ ମତେ, ସ୍ଥାବର ଜଙ୍ଗମାଦି ଯେତେ ।
ଥିବେ କି ଯିବେ ନାଶ, ଥିରରେ କହ ଦାସ-ବତ୍ସଳ ଥରେ ରମାପତେ ।୧୭।
ହେ ସ୍ଥୂଳବପୁ ।

ଦୀନବାନ୍ଧବ ହୋଇ, ଦୟା କରୁଛ ନାହିଁ, ଦୁଃଖୀ ଦେଖି ତ ଦିଅ ଦଣ୍ଡ ।
ଦୂରକୁ କର ଦାଢ଼୍ୟ, ପର ହେ ମହାମେରୁ, ମିଥ୍ୟା କି ସତ୍ୟଟି ଯେ ଖଣ୍ଡ ।
ହେ ଦୀନବନ୍ଧୁ ।
ଦୀନଖିଆକୁ କର ଆଶ, ଦୀବାରେ ମୁହିଁ ଗଲେ ନାଶ ।
ଦିବଦେଠି ସକଳ-ଜନ ହେ ଦୀନପାଳ, ଦାଣ୍ଡରେ ହେବ ଉପହାସ ।
ହେ ଦୀନବନ୍ଧୁ ।

ଧନ୍ୟ ଦତ୍ତେ ଅବନୀ, ରଖିଲ ଲୋକତନ, ସେ ବେଳ ବଳ ଅବା କାହିଁ ।
ଧାଇଁ ଛେଦିଲ ନକ୍ର, ଶ୍ରୀକରେ ଧରି ଚକ୍ର, ସେ ସବୁ ଅବା ଗଲା କାହିଁ ।
ହେ ଧ୍ରୁବଧ୍ୟେୟ ।
ଧାତା ଲେଖିବା କଥା ଦେଖି, ଧାଡ଼ି ନ ପୋଛ ଯାହା ଏ କି ।
ଧୂର୍ତ୍ତି ମୁଁ ବୋଲି ଡର, ଧଡ଼ି ପଡ଼େ ନ ଭର, ଧରମ ଏହା ହେବଟି କି ? ।୧୯।

ହେ ଧ୍ରୁବଧ୍ୟେୟ ।
ନବ ନୀରଦ ତନୁ, ପାଶୋରି ଦେଲ ମନୁ, ନାହିଁ ଗତି ମୋ ଆନ କେହି ।
ନାପ ଉପରୁ ଡେଇଁ, ନାଗକୁ ଦଳି ଦେଇ, ନିର୍ବିଷ କଲ ଜଳ ଯହିଁ ।
ହେ ନାରାୟଣ ।
ନରେଖି ତହିଁ ନରପଶୁ, ନାଶ ନଗଲେ କୃପାବଶୁଁ ।
ନିଜ ଗୁଣ ତୁମ୍ଭର, ନୋହୁଛି ତ ପ୍ରଚୁର, ନିନ୍ଦା ପାଇବ ନନ୍ଦ ଶିଶୁ ।୨୦।

ହେ ନାରାୟଣ ।
ପାପିଷ୍ଠ ବଂଶ କରେ, ପୀଡ଼ା ପାଇ ଅମରେ, ପଳାଉଥିଲେ ସ୍ୱର୍ଗ ଶଚୀ
ପାଦେ ପଡ଼ିବା କ୍ଷଣି, ପୃଷ୍ଣି ଦୟାରେ ପୁଣି, ନିର୍ଭୟ କରିଦେଲ ଯାଚି ।
ହେ ପଦ୍ମକର ।
ପଢ଼ୁଆ କରୁଁ ନାହିଁ ବୋଲି, ପଦ୍ମାଳୟାଙ୍କୁ ଧରି ଫୁଲି ।
ପକ୍ଷୀଣ ମାତୃଗର୍ଭେ, ପଶୁ ବାନରି ସଙ୍ଗେ, ସହିତେ ଗଲେ ଲଙ୍କା ଭୁଲା ।୨୧।
ହେ ପଦ୍ମକର ।

ପରୁଆ କରୁ ନାହିଁ ବୋଲି, ପଦ୍ମାଳୟାଙ୍କୁ ଧରି ଫୁଲି ।
ପଚିଶ ମାତୃଗର୍ଭେ, ପଶୁ ବାନରଣ ସବେ, ସହିତେ ଗଲେ ଲଙ୍କା ବୁଲି ।୨୧।
ହେ ପଦ୍ମକର ।

ଫିରିଆଦ ମୋହର, ନ ଶୁଣିଲେ ଏଥର, ଫଙ୍କର ହେଲି ବୋଲି ଜାଣ ।
ଫଟା କପାଳେ ଲେଖା, ହେବା ଅକ୍ଷର ରେଖା, ପୂର୍ବହୁଁ ତୁମ୍ଭର ଭିଆଣ ।
ହେ ଫଗୁ ପ୍ରିୟ ।

ଫଟିକ ପଟେ ତୁମ୍ଭେ କର, ଫୁକାର ଜଗତେ ନ କର ।
ଫେଡ଼ି କହିବ କିସ, ଫୁଟିବା ଫୁଲବାସ, ଲୁଚିବ କି ହେ ରମାବର ।୨୨।
ହେ ଫଗୁ ପ୍ରିୟ ।

ବିଭୀଷଣକୁ ବର, ଦେଲ ବାରିଧି ତୀର, ବିପତ୍ତି କାଳେ ଲକ୍ଷ୍ମୀପତି ।
ବାନ୍ଧିଲ ସିନ୍ଧୁ ହେଳେ, ବନ ପଶୁଙ୍କ ମେଳେ, ବିନାଶି ଦେଲ ଲଙ୍କାପତି ।
ହେ ବିଶ୍ୱମ୍ଭର ।

ବଡ଼ ଭୟ ଲାଗଇ ମନ, ବଞ୍ଚିବୁଁ କି ରୂପେ ମୋହନ ।
ବେଳକୁ ବେଳ ମୋର, ବଢ଼ୁଛି ବିପଦର, ବିଶ୍ୱାଏ ଊଣା ନାହିଁ ଯେନ ।୨୩।
ହେ ବିଶ୍ୱମ୍ଭର ।

ଭଗାରି ହସା କରି, ଭସାଇଲେ ଶ୍ରୀହରି, ଭାଗ୍ୟ ଦେବ କେ ଅଛି ଆଉ ।
ଭାଲପଟ ଲେଖନ, ଥିଲେ ତା ହେଉ ଆନ, ଭ୍ରମରେ ଟଳେ ତା ନ ରହୁ ।
ହେ ଭୟହର୍ତ୍ତା ।

ଭକ୍ତଙ୍କୁ ନ ଚାହିଁଲେ ବାରେ, ଭକ୍ତବତ୍ସଳ ବୋଲି ଗାରେ ।
ଭାବନା ଯେ କେତ୍ର, ପକାଇବେ କି ଆଉ, ଭାବୁନାହିଁ କି ଭାଳିବାରେ ।୨୪।
ହେ ଭୟହର୍ତ୍ତା ।

ମହିମା ଶୁଣି ଯାର, ଉରକ୍ତ ସ୍ୱର୍ଗପୁର-ଧଜନ ହୋଇ ମଘବାନ ।
ମହତ୍ତ୍ୱ ମୋର ସରି ଯାଉଛି ଦେଖି କରି, ବେଳେ ତ ଡେରୁଛ ନାହିଁ କାନ ।
ହେ ମହାମେରୁ ।

ମନ୍ତ୍ରୁ ବିକଳେ ମହିମା, ମାର କି ତାର ଗୁଣ ସୀମା ।
ମୋପରି ପାପୀ ଆଉ, ନଥିବ ମହାବାହୁ, ଖୋଜିଲେ ତ୍ରିଲୋକରେ ଜମା ।୨୫।
ହେ ମହାମେରୁ ।

ଯଜ୍ଞ କରନ୍ତି ଯେତେ, ସରୁଛି ସବୁ ଏତେ—ବେଳକୁ ଜାଣୁଛ କି ନାହିଁ ।
ଯମ ଦେବନ୍ତି ଦଣ୍ଡ—ଦେବ କାହାର ମୁଣ୍ଡ-ଅଣ୍ଟକ ଭଣ୍ଡିବ ଯେ ତହିଁ ।
ହେ ଯଜ୍ଞମୂର୍ତ୍ତେ ।

ଯଥାର୍ଥ କର ଦର ଧର, ଯଶ ଉଡ଼ୁଛି ତ୍ରିପୁର ।
ଯାମକେ ଅଘ ଦଳ, ଦେଇଛ ବନମାଳୀ, ମୋ ଅଘ ବା କେତେକର ।୨୬।
ହେ ଯଜ୍ଞମୂର୍ତ୍ତେ ।

ରକ୍ଷା କରିବ ବୋଲି, ରଖିବ ପଦେ ଫୁଲ, ଫୁଲ ମୁଁ ପଶିଲି ଶରଣ ।
ଜଗକୁ ରଖି ରହିଛ, ମୋହ ଠାରେ କଣ୍ଟେ, ଦୟା ନରଖ ଆର୍ତ୍ତିନାଶ ।
ହେ ରମାପତେ ।

ରାହା ତ କାହିଁ ନ ଦିଶଇ, ରହିବ କେଉଁଠାରେ ଯାଇ ।
ରଣ ଦେବ ଏଥର, ରମା ସହିତେ ମୋର, ବିପଦ ନ ଖଣ୍ଡିବେ କେହି ।୨୭।
ହେ ରମାପତେ ।

ଲାବଣ୍ୟ ନିଧିଙ୍କର, ପଦରେ ଦେଇ ଭାର, ଭରସେ ଭୁଲୁଥାଏ ଝୁଲି ।
ଲବ ମାତ୍ରକେ ମୋର, ଲକ୍ଷ୍ୟ ନାହିଁ ଖାତର, କେ କସ କରିଦେବେ ବୋଲି ।
ହେ ଲକ୍ଷ୍ମୀନାଥ ।

ଲୀଳା ଦେଖିବା ପାଇଁ ସିନା, ଲଗାଇଛ ଯେ ଦୁର୍ଘଟଣା ।
ଲଞ୍ଜ କି ନଅ ପଟେ, ଲାଞ୍ଛନା ନୋହୁ ମିଛେ, ଲଗଡ଼େ ପୂରୁ ମୋ କାମନା ।୨୮।
ହେ ଲକ୍ଷ୍ମୀନାଥ ।

ବରଦ କୃପାମୟ, ବିଷ୍ଣୁ ବାମନ ଦୟ, ଶ୍ରୀ ଶ୍ରୀ ବରାହ ବାସୁଦେବ ।
ବଳଙ୍କ ସାନଭାଇ, ବଧିଲ ମୋହ ପାଇଁ, ବାନ୍ଧିବା ବ୍ରତ କି ଛାଡ଼ିବ ।
ହେ ବିଶ୍ୱରୂପ ।

ବେଳେ କରୁଣା ଦୃଷ୍ଟି ପଡ଼ୁ, ବିପକ୍ଷ ମତେ ଦେଖି ଡରୁ ।
ବୀରଙ୍କ ଶିରୋମଣି, ବୋଲାଇବାର ବାଣୀ, ବ୍ରହ୍ମାଣ୍ଡ ଚଉଦରେ ବଢ଼ୁ ।୨୯।
ହେ ବିଶ୍ୱରୂପ ।

ଶବରୀ ଆତ୍ମଦାନ, କରି ପାଇଲା ସ୍ଥାନ, ଯୋଗୀ ଅଗମ୍ୟ ବଇକୁଣ୍ଠ ।
ଶୂଦ୍ର ଜନମ ପାଇ, ବିଦୁର ଶାକ ଦେଇ, ବାନ୍ଧିଲେ ତୁମ୍ଭପୁରେ ମଠ ।
ହେ ଶ୍ୟାମତନୁ ।

ଶବର ଜନ୍ମ ଗୁହ ପାଇ, ଶରଣ ମାତ୍ରେ ମିତ୍ର ହୋଇ ।
ଶିବଙ୍କଠୁ ଅଧିକେ, ବସିଲେ ତୁମ୍ଭ ପାଖେ, ସଦ୍ୟ ଶୋଣିମାଧର ପାଇଁ ।୩୦।
ହେ ଶ୍ୟାମତନୁ ।

ସାମନ୍ତ ମୋହର ତ, ସର୍ବଙ୍କ ଗୁଣେ ଯୁତ ସୃଷ୍ଟିରେ ଏକା ଅଧିପତି ।
ସନ୍ତାନ ସବୁ ମୋର, ଥିବା ଗୃହ ସଂସାର, ସାବଧାନ ନୋହୁନ୍ତୁ ମତି ।
ହେ ସାରସାକ୍ଷ ।

$ ସ୍ୱୟଂଭୂବ ମୋ କପାଳରେ, ସରି ଯିବାକୁ ଏହି ଠାରେ ।
ସାଧିଛନ୍ତି ଯେବେ ଗ୍ରହ, ନିରଖି ଅନୁଗ୍ରହ, କହିବଅ ମତେ ବାରେ ।
ହେ ସାରସାକ୍ଷ ।

ଷୋଡ଼ଶ କଳାପୂର୍ଣ୍ଣ, ସ୍ୱୟଂ ଶ୍ରୀଭଗବାନ, ସମସ୍ତେ ତୁମ୍ଭେ ଏକା ଧେନ ।
ଷଡ଼ମୁଖଙ୍କ ପିତା, ଆଦି ଯେତେ ଦେବତା, ସକଳେ ତୁମ୍ଭର ଅଧୀନ ।
ହେ ଷୋଡ଼ଶନ୍ୟାସୀ ।

ଷଟ୍‌ପଦ କେଶୀ ରାଧାବର, ସାରୁନ୍ତ ଜାଣି ମୋ ଆତୁର ।
ସଢ଼ି ମୁହିଁ ଲେସଢ଼, କରୁଛି ବୋଲି ରଢ଼, ସଢ଼ାଉଛ କି ମୋ ଶରୀର ।୩୨।
ହେ ଷୋଡ଼ଶନ୍ୟାସୀ ।

ହଜି ହରିବ ଦୁଃଖ, ବୋଲି ହେ ପଦ୍ମମୁଖ, ହରଷେ ନିଏ ମୁହିଁ କାଳ ।
ହରବରରେ ନେଇ, ପକାଇ ଦେବା ପାଇଁ, ହସି ନୋହୁଛ ଅନୁକୂଳ ।
ହେ ହଳୀଭାଇ ।

---

$ ସ୍ୱୟଂଭୂବ — ବ୍ରହ୍ମା

ହଇରାଣ ମୁଁ ବହୁତର, ହେଳାନ ବାଧିଲା ଏଥର ।
ହଜାର ଲୋକଙ୍କର, କପଦ କର ଦୂର, ହାଣିବ ଜାଣି କ ମୋ ଶିର ।୩୩।
ହେ ହଳୀଭାଇ ।

କ୍ଷମା ଜଳଧି ବୋଲି, ଖ୍ୟାତ ଶୁଣି ଭୁଲିଲି, କ୍ଷିତିରେ ନ ଗଣି କାହାକୁ ।
କ୍ଷୀରାବ୍ଧି ଶାୟୀଙ୍କର, କ୍ଷୀଣ ହେଲା ଏଥର, କ୍ଷୁଦ୍ର ଜୀବରେ କରୁଣାକୁ ।
ହେ କ୍ଷୀରଚୋର ।

କ୍ଷୋଭ ମୋ ନ ହରିଲେ ହରି, କ୍ଷମ କେ ଅଛୁ ତିନପୁରୀ ।
କ୍ଷିତିପତି ଶ୍ରୀ ବ୍ରଜ-ସୁନ୍ଦର ବୋଲେ ଆଜ, ମୋ ଜୀବ ଯିବଟି ବାହାରି ।୩୪।
ହେ କ୍ଷୀରଚୋର ।



# ୧୬୨

ଜଗନ୍ନାଥ ହେ, କସ କହିବ ହେ, ଜାଣି ପଣ୍ଡକେ ଦୁଃଖ ସହିବ ହେ ।
ଜଗତ ପିତା ହୋଇ, ଦେଲ ମତେ ଭସାଇ, କପାଳେ କର ମାରି
ରହିବ ହେ । ପଦ ।

ଜୀବ ଯାହାଙ୍କ ଘର, ଯାବତ ଜନଙ୍କର, ସେ ଥାଉଁହାକ ମାଡ଼ ଖାଇବ ହେ ।
ଜଞ୍ଜାଳ ନ ସମ୍ଭାଳି, ଜଡ଼ର ଦେବ ଗୈଳି, ଆତ୍ମଘାତୀ ମୁଁ ପଛେ
ହୋଇବ ହେ । ୧ ।

ଜଙ୍ଗମ ଯାକ ଡାକ, ପଡ଼େ ଲକ୍ଷ୍ମୀ ନାୟକ, ଦେଖିବା ଲୋଭେ ସିନା
ଧାଇଁବି ହେ ।

ଜପ ତ ନାହିଁ କରି, ଜଳଜ ମୁଖ ହେରି-ବାର ଫଳ କରୁପେ
ପାଇବ ହେ । ୨ ।

ଯାହାଙ୍କ ନାମ ଜନ-ରକ୍ଷଣ ବିଚକ୍ଷଣ, କ୍ଷଣେ ମୁଁ ସେ ପତାକା ଗୁହିଁବି ହେ ।
ଜବର ହୋଇ ମୋର, ଭରସା ଅଛି ଘୋର, ଭବ ସାଗରେ ଜୀବ
ଧୋଇବ ହେ । ୩ ।

ଯେବେ ମୋହର ତ୍ରାଣ, ନୋହିବ ଆର୍ତ୍ତିହାଣ, ଦେଶ ଦେଶରେ ଯାଇ
ବୁଲିବ ହେ ।

ହେ ଜଳଧି ଶମ୍ଭନ, ଜଗତ ଭଗବାନ, କର୍ମବିବ ଯେଉଁ ନାଟ
ଭେଇବ ହେ । ୪ ।

ଜଳଜନମ୍ଭନଙ୍କ, ହେଲାରୁ ହେଲି ରଙ୍କ, ବୋଲି ଝମକ ଦାଣ୍ଡେ ବାଇବ ହେ ।
ଜନମତ ବିଫଳ, ହେବ ମୋ ଶିଖିଚୂଳ, ଲଜ ମୁଁ ଭୁମ୍ଭ ମୁଖେ
ଥୋଇବ ହେ । ୫ ।

ଜମ୍ବୁ ଜମ୍ବୁ ଶବଦ, ବିଆଇ ମୋର ଖେଦ, ନ ରହିଲେ କେତେ ମୁଁ
ସହିବ ହେ ।

ଯା' ନାମ ଆର୍ତ୍ତିହାଣ, ସେ ନୋହିଲେ କାରଣ, ଖଗାସନ ଅଗତି
ହୋଇବ ହେ । ୬ ।

## ୧୭୩

ଜଣାଇବ କେତେ ଜଗତନାଥଙ୍କ ଦୁଃଖ ନରତେ । ପଦ ।

ଜଞ୍ଜାଳ ମୋହର ସହି ନ ପାରେ ଯେ । ଯେବେ ଶ୍ରୀମୁଖ ହେବ ବନ୍ଦ କର ।
ଝଙ୍କିବା କଥା ଯିବ ମୋର ମନୁ । ଜାଣିବ ନଷ୍ଟେ ଗଲା ଏହୁ ତନୁ । ୧ ।
ଯେତକ ଇଛା ଆଜ୍ଞାକୁ ଆସିବ ଯେ । ଜଣାଣ ଦୋଷ ମାଫ କ୍ଷମା ହେବ ।
ଯୋଡ଼ାଏ ମାସର ମାଫ ବର୍ତ୍ତନ । ଜାଣି ଦିଲ ହେବ ଅବଧାନ । ୨ ।
ଜାଣ ତ ପିତୃ ପିତାମହ ଆଦି ଯେ । ଯତ ଯାବତ ଏ ଦ୍ୱାନ୍ତୁ ସପାଦ ।
ଜବର ଏଣୁ ମାଟିବାର ବଲ ଯେ । ଯେଣୁ ଶ୍ରୀ ଦେଉ ଅଛ ମୋ କପାଳ ।୩।
ଜଣକ ବିନା ମାଗିବାକୁ ଆଉ ଯେ । ଜଗତେ ମତେ ନ ଦିଶଇ କେହୁ ।
ଝାଉଁଥାଇ ମୁଁ ପିଣ୍ଡକୁ ନ ଦେଲେ । ଜନେ ବୋଲିବେ ଶ୍ରାଦ୍ଧ ଛାଡ଼ି ଦେଲେ ।୪।
ଯହିଁ ଥିଲେ ତ ଶ୍ରୀ ପ୍ରଭୁଙ୍କ ଦାସ । ଖାଉଁଥିବ କ ଯେତେ ଦିନ ଗ୍ରାସ ।
ଯେପରି ହେଲେ ଅନୁଗ୍ରହ ଦାନ । ଜାଣ ତ ମାଗଇ ଦାଶ ହନୁମାନ ।୫।



## ୧୭୪

କରୁଛି ବିନୟ କୃପାସିନ୍ଧୁ ହେ ଉତ୍ତର ନ ଦିଅ । ପଦ ।

କନକବରଣ କମଳାଲକ୍ଷ୍ମୀ ଯେ । କରିଛନ୍ତି ଯାହା ହସ୍ତ ସୁଦସ୍ତା ।
କେତେ କାହାକୁ ନ ଦେଉଛ ଧନ । କହିବାକୁ ତା ମୁଁ ନିକ ଭାଜନ । ୧ ।
କରୁଣା କଟାକ୍ଷ ହେଲେ ଯାହାର ଯେ । କୋଳି ବକାଠା ହୁଅଇ କୁବେର ।
କଉଡ଼ି ଗଣି ନ ଜାଣଇ ଯେହି । କୃପାରୁ ଭୁମର ଲକ୍ଷପତି ସେହି ।୨।
କାଳି ନ ଗଲେ ନ ଅଣ୍ଟିବ କାଳ ଯେ । କରମ ମୋହର ହେବାରୁ ଦୁର୍ବଳ ।
କରିବାକୁ ପିଣ୍ଡ ତର୍ପଣ ଆଦି । କଷ୍ଟ ଯତନରେ ନାହିଁ ସପାଦ ।୩ ।
କୁର୍ଣ୍ଣିତ ପରି କଲେ ଅଳପକେ ଯେ । କଷ୍ଟ ଉଣାଧିକେ ଗୃହ ଶତ ଲୋକେ ।
କରିବେ ତ ଭୋଜନ ବୋଲି ଡ଼ରଇ । କୋ ପରି ହେବ ବୁଦ୍ଧି ଦିଶୁ ନାହିଁ ।୪।
କନ୍ଦର୍ପ ଦର୍ପହର ଅବତାର ହେ । କସ ମାଗୁଛି କରିବ ମୁଁ ଗୁହମୁର ?
କରିବା ଦୋଷ କ୍ଷମା ହେଉ । କ ଆଜ୍ଞା ହେବ ବେଗେ ଶୁଣା ଯାଉ ।୫।
କହେ ହନୁମାନ । କରୁଣାନିଧି କର କୃପାଦାନ ।



## ୧୭୫

ଦୀପାବଳୀର କିରଣ, ନଖ ଶିଖ ଜ୍ୱାଳା କଣ, ଦୀକ୍ଷା କରି ତରି
ଦେଲ ବେଳ ।

ହେ ଦୀନବନ୍ଧୁ ।

ଦନୁଜ ଯେ ଦଶାନନ, ଦୁର୍ଦ୍ଧର ଦେବଗୁମାନ, ଦୁଷ୍ଟେଷ୍ଟାଙ୍କୁ ବିଭୀଷଣ ଡରି ।
ଦୟାଳୁ ହେ ରାମଚନ୍ଦ୍ର, ଦେଖା ଦେଲ ହୋଇ ସାନ୍ଦ୍ର ଦୋଷ ତାଙ୍କ ଦେଲ
କ୍ଷମା କରି ।

ହେ ଦୀନବନ୍ଧୁ ।

ଦିଆଗଲା ଲଙ୍କାରାଜ୍ୟ ହେଲେ, ଦମ୍ଭ ତେଜ କପିରାଜ ମୂଳେ ।
ଦୀର୍ଘାୟୁ କରି ବର, ଦେଲ ରଘୁବୀର ଦ୍ୱାର, ଦେଲ ପାସୋରି କି
ମୋ କପାଳେ ?

ହେ ଦୀନବନ୍ଧୁ ।

★ ଦିବସ୍ପତି କପଟରେ, ଦୁର୍ଘଟ * ବଟୁ ବେଶରେ, ଦେହକୁ ଲୁଚାଇ
ମୁନିବେଶେ ।
ଦଉଡ଼ି ଅହଲ୍ୟା ନାରୀ, ରତିରସେ ମାତିକରି, ଯିବାବେଳେ ଦେଖି ମୁନି ରୋଷେ ।

ହେ ଦୀନବନ୍ଧୁ ।

ଦାହ କନକାଙ୍ଗୀ ନିଜନାରୀ, ଦେଲେ ତନୁଶିଳା ଶାପୁଁ କରି ।
ଦେଖି ପଦସ୍ପର୍ଶେ ପୁଣି, ଦିବ୍ୟ ଯେ କଲ ତରୁଣୀ, ଦେଇଛ କିପାଁ ତା ପାସୋରି ।

ହେ ଦୀନବନ୍ଧୁ ।

† ଦରୀଗର୍ଭେ ବାସ କରି, ଦୋର୍ମ୍ମଳ ଯେ ଦେଲ ଶରି, ଦ୍ରୋଣକାକ
ସୀତା ସଙ୍ଗଙ୍କର ।
ଦେଖି ସେ ବିପଦ ଦୁଃଖ, ମାଂସାଶୀ ପାପିଷ୍ଠ ମୂର୍ଖ, ପଦ୍ମ ନେତ୍ର ବୁହିଁ
ଗଲା ଥରି ।

ହେ ଦୀନବନ୍ଧୁ ।

---

★ ଦିବଃପତି — ଇନ୍ଦ୍ର ।
* ବଟୁ — ବ୍ରାହ୍ମଣ ବା ମୁନି ।
† ଦରୀ — ପର୍ବତକନ୍ଦର ।

ଧିଜର ମୁଣ୍ଡ ବଗୃର ଚକ୍ରେ, ଦେଲ ତୃଣ ଫିଙ୍ଗି ମନ୍ଧ୍ୟୁତେ ।
ଦଗନ୍ଧଗ ବୁଳାଧରା, ଦୁଇପଦେ ପଡ଼ୁପରା, ଦେହକୁ ତା ରଖିଲ କଞ୍ଚତେ ।
ହେ ଦୀନବନ୍ଧୁ ।

ଦରିଦ୍ର ସୁଦାମା ମିତ୍ର, ଦେଲେ ଖୁଦ କଣ୍ଟି ମାତ୍ର, ଦିଆଗଲା ସ୍ୱର୍ଗ ଶ୍ରୀ ।
ଦାନବାରି କରେ ଧରି, ଦାନବ ବଳିର ଶିରୀ, ଘାଉଁ ପଦଚପେ ଦେଲ ପାରି ।
ହେ ଦୀନବନ୍ଧୁ

ଦେବାଦି ଥୋଇବା ଅଧିକାର, ଦୟାନିଧି ସବୁ ତୁମର ।
ଦଶାପଦେ ଯେନ କର୍ଣ୍ଣ, ଦୀନ ମୁଁ ଯେ ହନୁମାନ, ଦାସ ଦୋଷ ବେଗେ
କ୍ଷମାକର ।
ହେ ଦୀନବନ୍ଧୁ ।



# କବି ଗୋବିନ୍ଦ ରାୟଗୁରୁ

(୧୮୬୧-୧୯୦୧)

କବି ହେଉଛନ୍ତି, ହନୁମାନ ରାୟଗୁରୁଙ୍କର ପୁତ୍ର । ଗଞ୍ଜାମ ଜିଲ୍ଲାର ବ୍ରାହ୍ମଣ ଘୁଇ ଗ୍ରାମରେ ତାଙ୍କର ଜନ୍ମ, ମାଘ ମାସ ଶୁକ୍ଳ ନବମୀ ଗୁରୁବାର ଦିନ । କୁଳଦେବତା ଶ୍ରୀରାଧାଗୋବିନ୍ଦଙ୍କ ପ୍ରସାଦରୁ ଏହାଙ୍କର ଜନ୍ମ ଘଟିଥିଲା ବୋଲି, ପିତା ତାଙ୍କ ନାମ ରଖିଥିଲେ, ଗୋବିନ୍ଦ । ବାଲ୍ୟକାଳରେ ଗୋବିନ୍ଦଙ୍କୁ ଚଟଶାଳୀ ଶିକ୍ଷା ପ୍ରଦାନ କରିଥିଲେ କଟକ ଜିଲ୍ଲା ଜାମପୁର ନିବାସୀ ଶ୍ରୀଗୋପୀନାଥ ପଟ୍ଟନାୟକ ଏବଂ ସଂସ୍କୃତ ଶିକ୍ଷାଦାନ କରିଥିଲେ ସ୍ୱଗ୍ରାମ ନିବାସୀ ଆଚାର୍ଯ୍ୟ ଶ୍ରୀ ଚନ୍ଦ୍ର କର ।

କୋଡ଼ିଏ ବର୍ଷ ହୁଅନ୍ତେ ଗୋବିନ୍ଦ ରାୟଗୁରୁ, ସ୍ୱଗ୍ରାମସ୍ଥ ଶ୍ରୀ ଜଗନ୍ନାଥ ରାୟଗୁରୁଙ୍କର କନ୍ୟା ସାଧବାଣୀଙ୍କୁ ବିବାହ କଲେ । ଗୋବିନ୍ଦ, ସ୍ୱୟଂ ଦୁର୍ଗାଦେବୀଙ୍କ ନିକଟରେ ଭୁବନେଶ୍ୱରୀ ମନ୍ତ୍ର ଉପାସନା କରି କବିତ୍ୱ ଶକ୍ତି ଲାଭ କରିଥିଲେ । ଧରାକୋଟ ରାଜା ଶ୍ରୀ ମଦନମୋହନ ସିଂହଦେବଙ୍କ ପୃଷ୍ଠପୋଷକତା ଲାଭ କରିଥିଲେ ଏବଂ ତାଙ୍କ

ଠାରୁ ରାୟଗୁରୁ ଉପାଧି ପାଇଥିଲେ । ଏଠାରେ ସେ, ବୃନ୍ଦାବନ ଚନ୍ଦ୍ରାନନ୍ଦ ଚଂପୂ, ଅଭିନବ ଚୌପଦୀ ରତ୍ନାକର, ଦେବେନ୍ଦ୍ର ସଭା ନାଟକ ଏବଂ ପ୍ରହ୍ଲାଦ ନାଟକ ରଚନା କରିଥିଲେ । ଏତଦ୍‌ଭିନ୍ନ ବହୁ ପଦ୍ୟାବଳୀର ସ୍ରଷ୍ଟା ରୂପେ ମଧ୍ୟ ସେ ସମ୍ମାନିତ ହୋଇଥିଲେ ।

ପରବର୍ତ୍ତୀ କାଳରେ ଆପଣା କବିତ୍ୱ ପାଇଁ ସେ ଚିକିଟି, ପାରଳା, ସୁରଙ୍ଗୀ ପ୍ରଭୃତି ରାଜ ଦରବାରରୁ ବହୁ ସମ୍ମାନ ଓ ଉପଢୌକନ ଲାଭ କରିଥିଲେ । କବି ରାୟଗୁରୁ, ମାତ୍ର ଅଣତିରିଶ ବର୍ଷ ବୟସରେ ବସନ୍ତିକା ରୋଗାକ୍ରାନ୍ତ ହୋଇ ମୃତ୍ୟୁବରଣ କରିଥିଲେ । ତାଙ୍କର ପଦ୍ୟାବଳୀ ସାହିତ୍ୟକୁ ଅନୁଧ୍ୟାନ କଲେ ମନେହୁଏ, ସେ ପିତୃଦେବ ହନୁମାନ ରାୟଗୁରୁ ଏବଂ କବିସୂର୍ଯ୍ୟ ବଳଦେବ ରଥଙ୍କ ଦ୍ୱାରା ଖୁବ୍ ଅଧିକେ ପ୍ରଭାବିତ ।

## ୧୭୭

ହେ ଜଗନ୍ନାଥ ସାର୍ଥକର ମୋର ମନୋରଥ ହେ । ପଦ ।

ନୀଳାଚଳ ୧ନିକେତନ, କମଳା ଗଳାରତନ, ବଳାନୁଜ ହେ ନଳିନ-
ଦଳ ବିଶାଳ ଲୋଚନ, ହେଳା କଲେ ହେଜାଠି ଅନାଥ ହେ ।୧।

ଗଭୀର ଜଳରେ ନାଗ, କରନ୍ତେ ଆରତ୍ତ ବାଗ, ଶୁଣି ଚକ୍ରେ ବହ୍ନିହାଗ
ଗମିଲ ହୋଇ ଉଦ୍‌ବେଗ, କଳପଦ୍ମ ଚକ୍ରେ ନକ୍ର ହତ ହେ ।୨।

୨ଅଟବୀ ମଧ୍ୟେ ଗର୍ଭିଣୀ ୩ଏଣୀ ୪ହାସ ବାଣୀ ଶୁଣି, ନାଶି ତାଦୁଃଖକୁ ପୁଣି
ରଖି ଦେଇଛ ଧରଣୀ ମଧ୍ୟେ ଏହି ଯଶ ଯେ ବହୁତ ହେ ।୩।

ସଭା ତଳେ ଦୁଃଶାସନ, କଲାବେଳେ ବିବସନ, ଦ୍ରୁପଦ ନନ୍ଦନା ମାନ
ରଖିଲ ଯେ ସାବଧାନ ହୋଇ ଦାନ କରି ୫ଚେଲ ବ୍ରତ ହେ ।୪।

କହଇ ଦ୍ୱିଜ ଗୋବିନ୍ଦ, ହେ କୃପାନିଧି ମୁକୁନ୍ଦ, ତବ ଚରଣାରବିନ୍ଦ
ଦ୍ୱନ୍ଦେ ରଖାଅ ମୋ ମନ୍ଦ ମାନସ ହୋଇନ୍ତୁ ସନ୍ତତ ହେ ।୫।



୧. ନିକେତନ—ଗୃହ । ୨. ଅଟବୀ – ଅରଣ୍ୟ । ୩. ଏଣୀ—ହରିଣୀ ।
୪. ହାସ ଦୁଃଖ । ୫. ଚେଲ – ବସ୍ତ୍ର ।

# ୧୭୭

ହେ ରମାରମଣ କ୍ଷମା ବାରିଧି ବାରେ ଘେନ ମୋ ଜଣାଣ ହେ ।ପଦ।

ନୀଳାଚଳ ଚୂଳ ନିକେତନ ବଳାହକ କଳା ଅପଘନ ।
ବଳାନୁଜ ନଳିନ ନୟନ ଦଳା ହରିତ ବସନ ଘନ ରକ୍ଷଣ ହେ ।୧।

କରି ଡ଼ାକକୁ ଶୁଣି ସତ୍ୱର ଧରି ଶ୍ରୀକରେ ଅରି ପ୍ରବର ।
ହରି ହରିବାକୁ ନକ୍ରର ଶିର ପୂରିଲା ତ୍ରୀଜଗତେ ତୁମ୍ଭ ଯଶ ଗୁଣ ହେ ।୨।

କୁରଙ୍ଗ ଯୁବତୀ ଆର୍ତ୍ତି ଜାଣି କ୍ରୂର ବ୍ୟାଧକୁ ନାଶି ଯେ ପୁଣି ।
ଦୂରକଲ ତାର ଦୁଃଖ ଶ୍ରେଣୀ ମୁରହର ସୁର ବୃନ୍ଦ ବନ୍ଦ୍ୟଚରଣ ହେ ।୩।

ପାଣ୍ଡବ ବଧୂଙ୍କୁ ସଭାତଳେ ଦଣ୍ଡରୁ ରଖିଛ ପ୍ରଭୁ ହେଲେ ।
ଚଣ୍ଡୁଳା ପଣକୁ ଚେଲାଞ୍ଚଳେ ମଣ୍ଡିଦେଲ ପଟ୍ଟ ବାସ ରତ୍ନର ଭରଣ ହେ ।୪

ଅଷ୍ଟଦୁର୍ଗ ଖଞ୍ଜି କୋଠ ଧବ ହରିହର ମର୍ଦ୍ଦରାଜ ଦେବ ।
ଭବ ଭାଷିଲେ ହେ ବାସୁଦେବ ପଦାମ୍ବୁଜ ଦ୍ୱନ୍ଦେ ରଖ ଶରଣ ହେ ।୫।



## ୧୭୮

କଞ୍ଜନୟନ ଆହେ କମଳାକାନ୍ତ । କମ୍ବୁଚକ୍ର ଭୂଷିତ ଶ୍ରୀଜଗନ୍ନାଥ ହେ ॥
୧ଖଣ୍ଡ ପରଶୁ ୨ବିଧି ୩ଶେଷବନ୍ଦନ । ୪ଖଗପତି ଆସନ ଚନ୍ଦ୍ରଲପନ ହେ ॥
ଗଜରାଜ ଗରିଷ୍ଠ ବିପଦହର । ଗ୍ରାହୁଁ ଜୀବନକୁ ଯେ କଲ ଉଦ୍ଧାର ହେ ॥
ଘନବରନ ସଙ୍ଘଟ ବିନାଶୀ । ଘୋର ସଙ୍କଟୁ ମତେ କର ପାରି ହେ ॥
ଙାଳାଦ୍ରି ନିକେତନ ଙାଳ ସୁନ୍ଦର । ଙଖିଳ ଜୀବନ ପରିପାଳନ କର ହେ ॥
ଚତୁର୍ଦ୍ଦଶ ଭୁବନ ତ୍ରାଣ କରଣ । ଚକା ନୟନ ଦୀନଜନ ରକ୍ଷଣ ହେ ॥
ଛନ୍ଦୋମୟ ବିଗ୍ରହଧାରୀ ଶ୍ରୀହରି । ଛଦ୍ମେ ଦେଲ ବଳିକି ପାତାଳ ପୁରୀ ହେ ॥
ଜଳଧି ଶୟନ ହେ ଜଗତପତି । ୫ଜବେ ହର ଜାଣି ମୋହର ବିପତ୍ତି ହେ ॥
ଝଳ ଶ୍ରୀଅଙ୍ଗ ୬ଝଷକେତନ ତାତ । ୭ଝିମୁଟେ ପାର ସଂହାରି କି ଜଗତ ହେ ॥
୮ନାଗ ୯ନାକ ନଗର ନିବାସୀ ବନ୍ଦ୍ୟ । ଞୀରଜ ପଦ ୧୦ନଗଧର ମୁକୁନ୍ଦ ହେ ॥
ଟେକିଛ ବାହୁବେନି ଦୀନ ରକ୍ଷଣ ଚିହ୍ନ । ଟାକିଛି ମୁଁ ସେ ୧୧ଅନାତପକୁ
ନିତି ହେ ॥

ଠକ ପଣ କରି ମୁଁ କାଳକୁ ହରେ । ଠାବ ଦିଅ ହେ ପାପି ପବନ ପୁରେ ହେ ।
ଡରି ଏବେ ତୁମ୍ଭରେ ଯୋଡ଼ି ମୁଁ କର । ଡାକ ଦେଉଛି ରଖ ହେ ବିଶ୍ୱମ୍ଭର ॥
ଢକ୍କା ବାଜୁଛି ସଂସାରେ ତୁମ୍ଭଗୁଣ । ଢ଼ାଳିରଖ କିଞ୍ଚିତେ କୃପା ଈକ୍ଷଣ ହେ ॥
ଅପବର୍ଗ ଦାୟକ ଅଘ ନାଶନ । ଅସୁରଗଣ ମାରଣ ବିଚକ୍ଷଣ ହେ ॥
୧୨ତରଣିସୁତ ଭୟ ହର ମୁରାରି । ୧୩ତ୍ରିଦଶ ପତି ଗର୍ବ ନାଶନ କାରୀ ହେ ॥
ଥାଏ ମୋ ଭରସା ତୁମ୍ଭ ଚରଣ । ଥୟ ନ କଲେ ହେଲିଟି ଅକାରଣ ॥
ଦୟାନିଧି ହେ ଦୁଃଖିଜନ ସୋଦର । ଦ୍ରୌପଦୀ ଲଜ୍ଜା ସମୁଦ୍ରୁଁ କଲ ପାର ॥
ଧରା ଧାରଣେ ବରାହ ରୂପଧାରୀ । ଧ୍ରୁବଙ୍କୁ ଦେଲପରା ଦିବ୍ୟ ନଗରୀ ॥

---

୧ । ଖଣ୍ଡପରଶୁ — ମହାଦେବ । ୨ । ବିଧି — ବ୍ରହ୍ମା । ୩ । ଶେଷ — ଶେଷଦେବ । ୪ । ଖଗପତି—ଗରୁଡ଼ । ୫ । ଜବେ—ଶୀଘ୍ର । ୬ । ଝଷକେତନ—କନ୍ଦର୍ପ । ୭ । ଝିମୁଟେ— ପଲକ ମାତ୍ର । ୮ । ନାଗ — ପାତାଳ । ୯ । ନାକନଗର —ସ୍ୱର୍ଗ । ୧୦ । ନଗଧର — ଗିରିଧର । ୧୧ । ଅନାତପ—ଶୀତଳ । ୧୨ । ତରଣିସୁତ—ଯମ । ୧୩ ତ୍ରିଦଶପତି—ଇନ୍ଦ୍ର ।

୧ ନିରର୍ଗଳ ହୋଇଛନ୍ତି ଯା ଦ୍ୱୃପଣ । ନିରନ୍ତର ସକଳ ଲୋକ ପାଳନ ॥
ପରମ ପୁରୁଷ ହେ ପରମାନନ୍ଦ । ପ୍ରପନ୍ନ ରକ୍ଷଣ ଜଗଦାନନ୍ଦକନ୍ଦ ହେ ।
ସଦା କରନ୍ତି ତୁମ୍ଭ ପଦ ନନ୍ଦନ । ଫେଡ଼ ମୋ ଦୁଃଖେ ଫରମାସି ବନ୍ଧନ ॥
ବଳଦେବ ଅନୁଜ ବୈକୁଣ୍ଠ ନାଥ । ବସୁମତୀ ଭାର ହରଣ ଅନନ୍ତ ହେ ॥
ଭକ୍ତବତ୍ସଳ ଭବଭୟ ନାଶନ । ଭାରତୀ ଦେବୀ ଭର୍ତ୍ତା ଶ୍ରୀ ଭଗବାନ ହେ ॥
ମକର କୁଣ୍ଡଳୀଆ ମହାମେରୁ । ମନ୍ଦରଧର ବାଞ୍ଛା କଳ୍ପତରୁ ହେ ॥
ଯଜ୍ଞବନ୍ଦନ ଜଗତ କାରଣ । ଯମଳାର୍ଜ୍ଜୁନ ଭଞ୍ଜନ ଜନାର୍ଦ୍ଦନ ॥
ରମା ରମଣ ରତ୍ନାକର ମନ୍ଦିର । ରୁଦ୍ରାଦି ଦେବବୃନ୍ଦ ବନ୍ଦ୍ୟପୟର ॥
ଲୀଳାବିନୋଦୀଆ ହେ ଲାବଣ୍ୟସିନ୍ଧୁ । ଲଭେ କୃପାକର ଲକ୍ଷ୍ମୀ ପ୍ରାଣବନ୍ଧୁ ॥
୨ ବରଦ ବ୍ରଜପୁର କାମିନୀପତି । ୩ବିରୂପାକ୍ଷ ବିପକ୍ଷ ମୋହନ ମୂର୍ତ୍ତି ।
ଶରଣାଗତ ଜନ ରକ୍ଷଣପର । ୪ଶମନ ସ୍ୱସାତଟ ନିକଟ ଚର ହେ ॥
ସକଳ ଜୀବ ହୃଦେ ନିବାସ କର । ସର୍ବ ୫ଗୀର୍ବାଣଙ୍କ ଅଟ ଅଧୀଶ୍ୱର ॥
ଷୋଳ ସହସ୍ର ଗୋପନାଗରୀ ସଙ୍ଗେ । ସୁରତ ରଚନା କର ନାନାରଙ୍ଗେ ॥
ହରିହୃଦୟମଣି ଜଣି ଅପଘନ । ହରିତାମ୍ବର କଟିତଟ ଶୋଭନ ॥
କ୍ଷମାକର ମୋ ଦୋଷ କ୍ଷୀରାବ୍ଧିଶାୟୀ । କ୍ଷୋଭେ ଗୋବିନ୍ଦ ରାମଗୁରୁ କହଇ ॥



---

୧ । ନିରର୍ଗଳ — ଶୂନ୍ୟ । ୨ । ବରଦ — ଶ୍ରେଷ୍ଠ । ୩ । ବିରୂପାକ୍ଷ ବିପକ୍ଷ — କନ୍ଦର୍ପ । ୪ । ଶମନ ସ୍ୱସାତଟ — ଯମୁନା ତୀର । ୫ । ଗୀର୍ବାଣ — ଦେବତା ।